No share prices
no political fortunes, yet...

# Over 40% of Heritage readers are professionals or executives, 61% from households with a professional / executive as the chief wage earner. Half hold a postgraduate degree or a professional diploma.

– from an IMRB survey conducted in Oct. 1986




It's an unusual magazine. It has a vision for today and tomorrow.

It features ancient cities and contemporary fiction, culture and scientific developments, instead of filmstar interviews and political gossip. And it has found a growing readership, an IMRB survey reveals. Professionals, executives and their families are reading The Heritage in depth – 40% from cover to cover, 42% more than half the magazine.

More than 80% of The Heritage readers are reading an issue more than once.

And over 90% are slowly building their own Heritage collection.

Isn't it time you discovered why?

## THE HERITAGE

So much in st...



# ବୁଦ୍ଧି ବିକାଶ ପାଇଁ ଅଧିକ ସୁସ୍ୱାଦୁ ରୀତି
# ଫ୍ୟାରେକ୍ସ® ରୀତି

| ଆପଣଙ୍କ ଶିଶୁର ଉଚ୍ଚତା ଓ ଓଜନ ଯାଞ୍ଚ କରି ନିଅନ୍ତୁ* | ଶିଶୁ (ପୁଅ) | | ଶିଶୁ (ଝିଅ) | |
|---|---|---|---|---|
| | ଓଜନ | ଉଚ୍ଚତା | ଓଜନ | ଉଚ୍ଚତା |
| **୩** ମାସରେ | ୫.୨ କେଜି | ୫୯.୧ ସେ.ମି. | ୪.୯ କେଜି | ୫୮.୪ ସେ.ମି. |
| **୬** ମାସରେ | ୬.୭ କେଜି | ୬୪.୨ ସେ.ମି. | ୬.୧ କେଜି | ୬୩.୨ ସେ.ମି. |
| **୯** ମାସରେ | ୭.୩ କେଜି | ୬୮.୨ ସେ.ମି. | ୬.୯ କେଜି | ୬୭.୦ ସେ.ମି. |
| **୧୨** ମାସରେ | ୮.୪ କେଜି | ୭୩.୯ ସେ.ମି. | ୭.୮ କେଜି | ୭୨.୫ ସେ.ମି. |

* ଇଣ୍ଡିୟାନ କାଉନସିଲ ଅଫ ମେଡ଼ିକାଲ ରିସର୍ଚ୍ଚଙ୍କ ଦ୍ୱାରା ପ୍ରକାଶିତ ।

ଭାରତୀୟ ଶିଶୁମାନଙ୍କ ପାଇଁ ଏହା ଏକ ହାରାହାରି ହିସାବ । ଶିଶୁ ଯେଉଁପରି ବଢୁଛି ସେଥିରେ ଯଦି ଆପଣଙ୍କ ଡାକ୍ତର ସନ୍ତୁଷ୍ଟ ହୁଅନ୍ତି ତାହେଲେ ଆପଣ ନିଶ୍ଚିନ୍ତ ରହିପାରନ୍ତି ।

ବିନାମୂଲ୍ୟରେ ଶିଶୁର ଯତ୍ନ ସଂପର୍କୀୟ ଆପଣଙ୍କର ରଙ୍ଗୀନ ନିର୍ଦ୍ଦେଶ-ପୁସ୍ତିକା ପାଇବା ପାଇଁ ଏହି ଠିକଣାରେ ଲେଖନ୍ତୁ —
Glindia Ltd. (FPD/41),
ଡା. ଆନି ବେସାନ୍ତ ରୋଡ଼,
ଓର୍ଲି, ବମ୍ବେ-୪୦୦ ୦୨୫




ସର୍ବାଙ୍ଗୀନ ବୁଦ୍ଧି ବିକାଶ ପାଇଁ ଆପଣଙ୍କ ଶିଶୁକୁ ଦିଅନ୍ତୁ ପୁଷ୍ଟିଗୁଣରେ ପରିପୂର୍ଣ୍ଣ ଫ୍ୟାରେକ୍ସ ।

**ଫ୍ୟାରେକ୍ସ®**

**ବୁଦ୍ଧି ବିକାଶ ପାଇଁ ଅଧିକ ସୁସ୍ୱାଦୁ ରୀତି**

CMP-2155



# ଜହ୍ନମାମୁଁ

ନଭେମ୍ବର ୧୯୮୬



## ବିଷୟ-ସୂଚୀ






ପ୍ରତି ସଂଖ୍ୟା : ୨-୫୦

ବାର୍ଷିକ ମୂଲ୍ୟ : ୩୦-୦୦

'Anil Kum[illegible] Panigrahi

# ସ୍ୱପ୍ନ ସତ ହେଲା

ଜଣେ ପାଇଲଟ୍ । ତାହାହିଁ ହେବାକୁ ସେ, ସର୍ବଦା [illegible] ଥିଲେ । ଆଉ ସେ, ଯେତେବେଳେ ଛୋଟ ପିଲା ଥିଲେ, ସେତେବେଳେ କେବଳ ସେହି ବିଷୟରେ ହିଁ କହୁଥିଲେ । ମୋର ମନେଅଛି,—ସେ କିପରି ସୁସ୍ଥ-ସବଳ ହୋଇ ବଢ଼ିବ, ସେଥିପାଇଁ ଦିନରେ ଦୁଇଥର ହର୍ଲିକ୍ସ୍ ପିଇବା ସକାଶେ ମୁଁ ତାକୁ କହୁଥିଲି ।

ଆଉ ଏବେ ସେହିକଥା ସତ ହୋଇଛି । ଆମେ ତାର, ଦିନକୁ ଦଇଥର ହର୍ଲିକ୍ସ୍ ପିଇବାର ଯେଉଁ ଅଭ୍ୟାସ ପକେଇଥିଲୁ, ବର୍ଷ ବର୍ଷ ଧରି ସେହି ଅଭ୍ୟାସ, ଏପର୍ଯ୍ୟନ୍ତ ତାର ରହିଛି । ସେଥିପାଇଁ ମୁଁ ଆଜି ବହୁତ ଖୁସି ।



ଏହା ବର୍ଦ୍ଧନଶୀଳ ଶିଶୁମାନଙ୍କ ପାଇଁ ଭଲ ।

ହର୍ଲିକ୍ସ ହେଉଛି ଏକ ସୁସ୍ୱାଦୁ ପାନୀୟ । ଏଥିରେ ଛାମଯୁକ୍ତ ଦୁଧ, ମାଲଟେଡ୍ ବାର୍ଲି ଏବଂ ସୁନେଲି ଗହମର ସମସ୍ତ ପୋଷଣକାରୀ ଗୁଣ ଭରି ରହିଛି । ଏଣୁ ସାରା ଦୁନିଆଁରେ ଲକ୍ଷ ଲକ୍ଷ ପରିବାର ୧୦୦ ବର୍ଷରୁ ଅଧିକକାଳ ହେଲା, ହର୍ଲିକ୍ସ ଉପରେ ଭରସା ରଖି ଆସିଛନ୍ତି । ଏହା ପୁଷ୍ଟି ସାଧନର ଉତ୍ତମ ଆଧାର ରୂପେ ବିଶ୍ୱାସ ଭାଜନ ହୋଇ ପାରିଛି ।




ପୁଷ୍ଟି ଯୋଗାଇବାରେ ଅଦ୍ୱିତୀୟ

HMM-9240 ORI

# ଚନ୍ଦ୍ରମାମୁଁ

ସଂସ୍ଥାପକ : 'ଚକ୍ରପାଣି'
ସଞ୍ଚାଳକ : ନାଗି ରେଡ୍‌ଡୀ

---

ଏ ସଂଖ୍ୟାରୁ ଆରମ୍ଭ ହେଉଛି ପୁରାଣ କଥା କୃଷ୍ଣାବତାର । ଭାରତର ସଭ୍ୟତା, ସଂସ୍କୃତି, ସାହିତ୍ୟ, କଳା—କୃଷ୍ଣ ବିନା ଏସବୁର ଅସ୍ତିତ୍ୱ କଳ୍ପନା କରିବା ସମ୍ଭବ ନୁହେଁ । ଯେତେ ପ୍ରକାରେ, ଯେତେଥର ଏ କାହାଣୀ ଶୁଣିଲେ ବି ତାହା ପୁରୁଣା ହେବାର ନୁହେଁ । ଆଶାକରୁଁ, ଏ ସଚିତ୍ର କାହାଣୀ ଧିନେ ବାଳକବାଳିକାମାନଙ୍କୁ କୃଷ୍ଣଙ୍କ ସମ୍ପର୍କିତ ମୌଳିକ ଶାସ୍ତ୍ର ଓ ମହାକାବ୍ୟମାନ ପଢ଼ିବାକୁ ପ୍ରେରଣା ଦେବ ।

<u>ଅମରବାଣୀ</u>

ଅର୍ଥନାଶଂ, ମନସ୍ତାପଂ, ଗୃହେ ଦୁଶ୍ଚରିତାନି ଚ ।
ବଂଚନଂ ଚାପମାନଂ ଚ, ମତିମାନ୍ ନ ପ୍ରକାଶୟେତ୍ ।।
[ସଦ୍‌ବୁଦ୍ଧିଯୁକ୍ତ ମଣିଷ ନିଜ ଘର ଭିତରେ ଘଟୁଥିବା ଅର୍ଥନାଶ, ମନସ୍ତାପ, କାହାରି ଦୁରାଚରଣ, ବଞ୍ଚନା ଓ ଅପମାନ ଇତ୍ୟାଦି କଥା ବାହାରେ କହିବୁଲେ ନାହିଁ ।]




---

ବର୍ଷ : ୨୧ ନଭେମ୍ବର ୧୯୮୭ ଅଙ୍କ : ୫

ପ୍ରତି ସଂଖ୍ୟା : ଟ. ୨-୫୦ :: ବାର୍ଷିକ ମୂଲ୍ୟ : ଟ. ୩୦-୦୦





ସାନ ମୁନ୍ନା'ର ମନ ମୋଟେ ଭଲ ନାହିଁ
ଖେଳ ଖେଳିବା ବିନା ତ ରହି ହୁଏ ନାହିଁ ।
ସିଏ କିସ ବା କରିବ ଗା' ଦେହ ଭଲ ନାହିଁ
ଖେଳ ସାଙ୍ଗସାଥି କେହି ତୋଯ ପାଖ ମାଡ଼ନ୍ତି ନାହିଁ ॥

ଏକା ଖେଳିବା ଲାଗି ବହୁ ଭାବି ଚିନ୍ତି
ବାକ୍ସରୁ କାଢ଼ିଲା ସିଏ ୧୨ ରଙ୍ଗରଙ୍ଗିଆ ସାଥି ।
କାଗଜ ଉପରେ ଦେଖ, କଲମ କଏରେ ଗତି
ସୃଷ୍ଟି ହେଲା ଗୁଡ଼ି, ନଟ୍ଟୁ, ବଲେଇ, ଗଣ୍ଡା, ହାତି ॥

ଏକୋ ସବେ ଉପଯୋଗୀ, ସାଗୁଆ, ନେଳିଆ
ବାଦାମୀ, ହଳଦି ପୁଣି ପାଟଳ, ନାଲିଆ ।
ଭାଓଲେଟ୍, ବାଇଗଣି ଆଉ ନାରଙ୍ଗି, କାଳିଆ
ତମ ଲାଗି ପ୍ରତି ସେଟ୍ ଯେ ଦଶ ରଙ୍ଗିଆ

**ଏକୋ**
**ସ୍କେଚ୍ ପେନ**
**...ଙ୍ଗ ରାଇଜରେ ତମେ ହୁଅ ରଜା - ରଙ୍ଗେଇ, ଚିତ୍ରେଇ ମିଳେ କେତେ ମଜା !**



## ଜହ୍ନମାମୁଁ ସମ୍ବାଦ-ଝଲକ

### ପର୍ଯ୍ୟଟକ ମିକ



ମିକ ନାମକ ବିଲେଇଟିଏ । ପୃଥିବୀରେ ମାର୍ଜାର ଜାତିର ଇତିହାସରେ ଏକ ନୂଆ କଥା କରିଛି । ଜାପାନର ଜଣେ ପୋଲିସ କର୍ମଚାରୀ ସପରିବାରେ ନିଜ ଘରଠୁଁ ୩୭୦ କିଲୋମିଟର୍ ଦୂରବର୍ତ୍ତୀ ଗୋଟିଏ ସ୍ଥାନକୁ ବୁଲିବାକୁ ଯାଇ ଭୁଲ୍‌ରେ ମିକକୁ ସେଠି ଛାଡ଼ି ଆସିଥିଲେ । ଏକ ବର୍ଷ ସାତମାସ ପରେ ମିକ ଆସି ଖାଉନ୍ଦ ଘରେ ପହଞ୍ଚିଛି !

### ଚଳନ୍ତା ଚୌକି

ପଶ୍ଚିମ ଜର୍ମାନୀର ୨୯ ବର୍ଷ ବୟସ୍କ ଆଣ୍ଡ୍ରିଜ ଭାରତବର୍ଷ ଓ ଅନ୍ୟ କେତେକ ଦେଶ ବୁଲିବାର ସ୍ୱପ୍ନ ଦେଖୁଥିଲେ । କିନ୍ତୁ ଦୁର୍ଘଟଣାରେ ହଠାତ୍ ତାଙ୍କର ଅଣ୍ଟା ତଳ ଅଂଶ ଅଚଳ ହୋଇଗଲା । ସେ କିନ୍ତୁ ଏକ ଚକଲଗା ଚୌକିରେ ବସି ଭାରତ ସମେତ କେତେ ଦେଶ ବୁଲି ସାରିଲେଣି—୫୦,୦୦୦ କି. ମି. ଭ୍ରମଣ କରି ।



### ଲୁହାର ଶତ୍ରୁ



ଲୁହାକୁ କାଟିବା ନିମନ୍ତେ ସବୁଠାରୁ ଶକ୍ତିଶାଳୀ ଅସ୍ତ୍ର କ'ଣ ? ହୀରାର ଛୁରୀ ? ଇସ୍ପାତର କରତ ? ନା ! ପାଣିହିଁ ସେ ଅସ୍ତ୍ର । ଶବ୍ଦର ଗତିଠୁଁ ତିନିଗୁଣ ଅଧିକ ଗତିରେ ପାଣିର ସରୁ ଫୁଆରା ଛାଡ଼ି ପାରିଲେ ତାହା ସବୁଠୁଁ ସହଜରେ ଲୁହାକୁ କାଟି ପାରେ ।

### ଆଗ୍ନେୟ ବାଳକ

ରୁଷିଆର ଉକ୍ରାଇନ ଅଞ୍ଚଳର ୧୩ ବର୍ଷ ବୟସ୍କ ବାଳକ-ଟିଏ ସେ ଦେଶର ବୈଜ୍ଞାନିକମାନଙ୍କ ଭିତରେ ଚହଳ ସୃଷ୍ଟି କରିଛି । ଅନେକ ସମୟରେ ସିଏ ଯାହା ଧରି ପକାଉଛି, ସେଥିରେ ଦାଉ ଦାଉ ନିଆଁ ଜଳି ଉଠୁଛି । ବହି ହେଉ, ଲୁଗା ହେଉ । ତାକୁ ବର୍ତ୍ତମାନ ଗୋଟିଏ ହାସ୍‌ପାତାଲ୍‌ରେ ରଖି ପର୍ଯ୍ୟବେକ୍ଷଣ କରାଯାଉଛି ।



ପ୍ରାଚୀନ ସାହିତ୍ୟର ଚରିତ :

# ନିଶାକର

ନିଶାକର ନାମକ ବାଳକଟି ଯେ ଖାଲି ଦେଖିବାକୁ ଅଖାଡୁଆ ଥିଲା ତାହା ନୁହେଁ, ସେ ଥିଲା ମୋଟାବୁଦ୍ଧିଆ ଓ ତା' ସାଙ୍ଗଙ୍କୁ ଜିଦ୍‌ଖୋର ମଧ୍ୟ। ସେ ବଣ ଭିତରେ ମୁନିଋଷିଙ୍କ ବସତିରେ ରହୁଥିଲା। ସେଠି ସେ କିପରି ଭଲ ଖାପ୍ ଖାଆନ୍ତା !

ଦିନେ ସେ ବଣକୁ ଯାଇଥିଲା ଯେ ଆଉ ଫେରିଲା ନାହିଁ। ତା' ମା ଧର୍ମିଷ୍ଠା ଖୋଜି ଖୋଜି ତାକୁ ପାଇଲେ ନାହିଁ। ଅନ୍ୟମାନେ କହିଲେ, "ସେ ବୁଦ୍ଧୁକୁ ବାଘ ନେଇଥିବ !"

କେତେ ବର୍ଷ ପରେ ଧର୍ମିଷ୍ଠା ଦିନେ ଏକ ପରିତ୍ୟକ୍ତ ମୁହଁ ବନ୍ଦ ଥିବା କୂଅ ଭିତରୁ କାହାର କଣ୍ଠସ୍ୱର ଶୁଣିଲେ। "କେଉଁ ମୂର୍ଖ ଏ ପଥର କୂଅ ଉପରେ ରଖିଛି।" ସେ ବିରକ୍ତ ହୋଇ କହିଲେ।

"କିଏ କଥା କହୁଛି, ମାଆ ?" କୂଅ ଭିତରୁ ଶୁଭିଗଲା। ଧର୍ମିଷ୍ଠା ଚମକି ପଡ଼ିଲେ। ଏହା ତ ନିଶାକରର କଣ୍ଠସ୍ୱର ! ସେ ଆଖପାଖର ଲୋକଙ୍କୁ ଡାକି ଆଣିଲେ। ସେମାନେ ପଥର ଘୁଞ୍ଚାଇ ନିଶାକରକୁ ଉଦ୍ଧାର କଲେ।

ଦିନେ ତାଙ୍କୁ କୂଅ ଭିତରକୁ କେହି ଠେଲି ଦେଇ ପଥର ଗୃପି ଦେଇଥିଲା। ସେ କୂଅ ଭିତରେ ମିଳୁଥିବା ଗଛ ପତ୍ର ଖାଇ ଓ ପାଣି ପିଇ ବରାବର ଧ୍ୟାନ ପ୍ରାର୍ଥନା କରୁଥିଲେ। ପୂର୍ବଜନ୍ମମାନଙ୍କରେ ସେ ବଡ଼ ନିଷ୍ଠୁର ଥିଲେ ବୋଲି ତାଙ୍କୁ ଏ ଦଶା ଭୋଗିବାକୁ ହେଲା ବୋଲି ତାଙ୍କର ଜ୍ଞାନ ହେଲା।

ବାହାରକୁ ଆସିବା ବେଳକୁ ସେ ଜଣେ ଶାନ୍ତ ଓ ଜ୍ଞାନୀ ଯୁବକ। ସେ ତପସ୍ୟା କରି ଜଣେ ଋଷି ହେଲେ।





# ଅଦ୍ଭୁତ କବଚ

ଅନେକ ଦିନ ତଳର କଥା । ରାମଗଡ଼ ରାଜ୍ୟରେ ସେତେବେଳେ ପ୍ରତାପ ସିଂହ ବୋଲି ଗୋଟାଏ ଡାକୁ ଥାଏ । ଦିନବେଳେ ଜଣେ ସାଧାରଣ ଗ୍ରାମବାସୀର ପୋଷାକ ପିନ୍ଧି ରାତି ହେଲେ କେଉଁ ଘରେ ସେ ପଶିବ, ତାହା ଠାବ କରୁଥାଏ ।

ଦିନେ ଦୁଇପହର ବେଳେ ସେ ଗୋଟାଏ ବଡ଼ ଗାଁ ଭିତର ଦେଇ ଯାଉଛି, ଦେଖିଲା ଗୋଟାଏ ଗଛମୂଳରେ ଜଣେ ବାବାଜୀ ଶୋଇଛନ୍ତି । ସାଧୁ ବାବାଜୀଙ୍କ ପାଖରେ ବା କି ସମ୍ପଦ ଥିବ ଯେ ସେ ଚୋରି କରିବ ? ତଥାପି ଅଭ୍ୟାସ ଅନୁସାରେ ପ୍ରତାପ ବାବାଜୀଙ୍କୁ ଭଲ କରି ଲକ୍ଷ୍ୟ କଲା ।

ସେ ଏଣେତେଣେ ଅନାଇ ଦେଖିଲା, କେହି ଆଖପାଖରେ ନାହାନ୍ତି । ପାଖକୁ ଯାଇ ଦେଖିଲା ବାବାଜୀଙ୍କ ପାଖରେ କୌଣସି ଥଳି ବା ପୁଟୁଳି ନାହିଁ । ସେ ମନେ ମନେ ବିରକ୍ତ ହୋଇ କହିଲା, "ଏ ବାବାଜୀଗୁଡ଼ା କାହିଁକି, ବେକାର ଏ ଦୁନିଆରେ ଥାନ୍ତି ?"

ଦେଖିଲା, ବାବାଜୀଙ୍କ ହାତରେ ଗୋଟାଏ କବଚ ବନ୍ଧା ହୋଇଛି । ହୁଏତ ସେଇଟା ସୁନାରେ ତିଆରି ହୋଇଥିବ ଭାବି ସେ ଖୋଲିନେଲା । ନିଜ ହାତରେ ବାନ୍ଧି ସହରକୁ ଗଲେ କେହି ତାହା ଚୋରି ଜିନିଷ ବୋଲି ସନ୍ଦେହ କରିବେ ନାହିଁ, ଏଇଆ ଭାବି ସେ ତାହା ହାତରେ ବାନ୍ଧି ପକାଇ ତରତର ହୋଇ ଚାଲିଗଲା ।

ହଠାତ୍ ସେ ନିଜେ ପାଟି କରିବାକୁ ଆରମ୍ଭ କଲା, "ମୁଁ ଡାକୁ ପ୍ରତାପ ସିଂହ! ହଁ, ହଁ, ମୁଁ ଆଉ କେହି ନୁହେଁ, ଡାକୁ ପ୍ରତାପ ସିଂହ । ମୋତେ ଧରିବା ପାଇଁ ରାଜା ହଜାରେ ଟଙ୍କା ପୁରସ୍କାର ଘୋଷଣା କରିଛନ୍ତି !"

ସୁଶୀଳ



କେତେଜଣ ବାଟୋଇ ତା' ପାଟି ଶୁଣି କାବା ହୋଇ ରହିଗଲେ । ସମସ୍ତେ ଜାଣିଥିଲେ ଯେ ଡାକୁ ପ୍ରତାପ ସିଂହକୁ ଧରାଇ ଦେଲେ ରାଜା ପାଞ୍ଚହଜାର ଟଙ୍କା ପୁରସ୍କାର ଦେବେ । କିନ୍ତୁ ଖୋଦ୍ ପ୍ରତାପ ସିଂହ କ'ଣ ନିଜକୁ ଧରା-ପକାଇବ ? ଏ ଲୋକ କ'ଣ ପାଗଳ ? ସେମାନେ ତାକୁ ଧରିବେ କି ନାହିଁ କିଛି ଠିକ୍ କରିପାରିଲେ ନାହିଁ ।

ସେ ନିଜ ଆଚରଣରେ ନିଜେ ଆଚମ୍ବିତ ହୋଇ କବଚଟି ଖୋଲି ଫୋପାଡି ଦେଲା । ସଙ୍ଗେ ସଙ୍ଗେ କବଚ ଆପଣା ଛାଏଁ ଉଡି ଆସି ପୁଣି ତା' ହାତରେ ବାନ୍ଧି ହୋଇଗଲା । ସେତେବେଳକୁ ତା' ପାଟି ଶୁଣି ସେଠାରେ କେତେଜଣ ସିପାହୀ ଆସି ପହଞ୍ଚି ଯାଇଥିଲେ । ଡାକୁ ପ୍ରତାପ ସିଂହର ଯେଉଁ ବର୍ଣ୍ଣନା ସେମାନେ ଶୁଣିଥିଲେ, ତାହା ସହ ଏ ଲୋକର ଚେହେରା ମିଶି ଯାଉଥିଲା । ସେମାନେ ତାକୁ ଧରି ନେଲେ ଓ ରାଜାଙ୍କ ପାଖକୁ ନେଇ ଯାଇ ସବୁ କହିଲେ ।

ରାଜା କହିଲେ, "ନିଜେ ଡାକୁ କ'ଣ ପାଇଁ ନିଜକୁ ଧରା ପକାଇବ ? ଅବଶ୍ୟ ହଠାତ୍ ମୁଣ୍ଡ ଖରାପ ହୋଇଯାଇଥିବା ଅସମ୍ଭବ ନୁହେଁ । ଯାଇ ଏହାର ଘର ଖାନ୍‌ତଲସ୍ କର ।"

ପ୍ରତାପ ସିଂହର ଘର ଖାନ୍‌ତଲସ୍ ହେଲା । ଅନେକ ସୁନା ରୂପା ଟଙ୍କା ପଇସା ବାହାରିଲା । ସେସବୁ ଚୋରିମାଲ୍ ବୋଲି ପ୍ରମାଣ ମଧ୍ୟ ମିଳିଲା । ରାଜା ଆଶ୍ଚର୍ଯ୍ୟ ହୋଇ କହିଲେ, "ଏ ଲୋକ ପ୍ରତାପ ସିଂହ ଠିକ୍, କିନ୍ତୁ ସେ କାହିଁକି ନିଜକୁ ଧରା ପକାଇଲା, ତାହାର କାରଣ ଖୋଜି ବାହାର କରିବାକୁ ହେବ । ବର୍ତ୍ତମାନ ଏହାକୁ କାରାଗାରରେ ରଖ ।"

ପ୍ରତାପ କାରାଗାରରେ ରହିଲା । କାରା-ଗାରର ପ୍ରହରୀ ସହିତ ସେ ଖୁବ୍ ଶୀଘ୍ର ଗପସପ ଆରମ୍ଭ କରିଦେଲା । "ଆରେ ଭାଇ, ତୁ ଏଡ଼େ ସହଜରେ ଚୋରି କରି ଖସି ଯାଉ କିପରି ?" ପ୍ରହରୀ ପଚାରିଲା । "ଏଇ କବଚ ବଳରେ । ଏହାକୁ ବାନ୍ଧିଲେ ବୁଦ୍ଧି ବଢ଼ି-ଯାଏ । ତମେ ଦେଖିବ ?" ଏହା କହି ତାକୁ କବଚ ଦେଖାଇଦେଲା । ପ୍ରହରୀ କାରଗାରେ

ଦ୍ୱାର ଖୋଲି କବଚଟି ନେଲା ଓ ନାକେ ପିନ୍ଧିଲା । ସଙ୍ଗେ ସଙ୍ଗେ ତା' ଭିତରୁ ତା' ଗୋପନ କଥା ବାହାରି ଆସିଲା । ସେ କହିଲା, "ମୁଁ ନିଦରେ ଶୋଇ ପଡ଼ିଲେ ବି ମୋ ଆଖି ଖୋଲିଥାଏ ।"

ବୁଢ଼େଇଁ ଗପ କହୁଁ କହୁଁ ପ୍ରହରୀକୁ ନିଦ ଲାଗିଲା । ତା' ଆଖି କିନ୍ତୁ ଖୋଲିଥାଏ । ପ୍ରତାପ ଚୁପ୍ ଚୁପ୍ କାରାଗାରରୁ ବାହାରି ଚାଲିଗଲା । ପ୍ରହରୀର ନିଦ ଭାଙ୍ଗିଲା ବେଳକୁ ବନ୍ଦୀ ନାହିଁ । ସେ ସିଧା ଯାଇ ରାଜାଙ୍କ ପାଖରେ ପହଞ୍ଚିଲା ଓ ସବୁ କଥା କହିଲା ।



ରାଜା ବର୍ତ୍ତମାନ ବୁଝିପାରିଲେ କି ସେହି କବଚଟି ଯିଏ ପିନ୍ଧିବ, ସିଏ ନିଜ ପେଟରେ କିଛି କଥା ଲୁଚାଇ ରଖିପାରିବ ନାହିଁ । ସେ ବେଗରେ କବଚଟି ପ୍ରହରୀ ହାତରୁ ଝିଙ୍କି ଆଣିଲେ ଓ ଫୋପାଡ଼ି ଦେଲେ । ସଙ୍ଗେ ସଙ୍ଗେ କବଚ ଆସି ତାଙ୍କର ହାତରେ ଲାଗିଗଲା । ସେ ବୁଝିଲେ, କେହି ସ୍ୱେଚ୍ଛାପୂର୍ବକ ତାଙ୍କଠାରୁ କବଚ ନ ନେଲେ ତାହା କବଳରୁ ମୁକ୍ତି ନାହିଁ ।

ସେ କବଚ ଦ୍ୱାରା ତାଙ୍କ ସଭାସଦ୍‌ମାନଙ୍କ ବିଷୟରେ କିଛି ଜ୍ଞାନ ଅର୍ଜନ କରିବାକୁ ମନ କଲେ । ପରଦିନ ସେ ଜଣେ ଅମାତ୍ୟଙ୍କୁ କବଚ ଯାଚିଲେ । ସେ ନେଇ ପିନ୍ଧି ପକାଇ କହିଲେ, "ମହାରାଜ ମୋତେ ମନ୍ତ୍ରୀ କଲେ ରାଜ୍ୟରେ ବହୁତ ଉନ୍ନତି ହୁଅନ୍ତା ।" ଦ୍ୱିତୀୟ ଦିନ ଜଣେ କର୍ମଚାରୀ କବଚ ଗ୍ରହଣ କରି କହି ପକାଇଲେ, "ରାଜା ଦରମା ଦିଅନ୍ତି ଭଲ, କିନ୍ତୁ କାମ ବି ସେମିତି ଆଦାୟ କରି ନିଅନ୍ତି ।" ତୃତୀୟ ଦିନ ରାଜା ସେନାପତିଙ୍କୁ କବଚଟି ଦେଲେ । ସେ ତାହା ପିନ୍ଧି ଗମ୍ଭୀର ଭାବରେ କହିଲେ, "ମୁଁ ଯଦି ସିଂହାସନରେ ବସନ୍ତି, ତେବେ ରାଜା ହୋଇ କପରି ରାଜ୍ୟ ଶାସନ କରିବାକୁ ହୁଏ, ତାହା ଦେଖାଇ ଦିଅନ୍ତି !"

ରାଜା କବଚ ଫେରାଇ ନେଲେ. କିନ୍ତୁ ତାଙ୍କ ମନ ଖରାପ ହୋଇଗଲା । ସେନାପତିଙ୍କୁ ସେ ବହୁତ ବିଶ୍ୱାସ କରୁଥିଲେ । ଅଥଚ ସେ ଲୋକ ମନରେ ଏହିଭଳି ଉଚ୍ଚାକାଂକ୍ଷା ରହିଛି !

ପରଦିନ ରାଜା ମନ୍ତ୍ରୀଙ୍କୁ କହିଲେ, "ମୋ ମନରେ ସୁଖ ନାହିଁ । ରାଜକାର୍ଯ୍ୟରେ ମନ ଲାଗୁ ନାହିଁ ।"

ମନ୍ତ୍ରୀ କହିଲେ, "ମୁଁ ସେକଥା ଲକ୍ଷ୍ୟ କରି ପାରୁଛି । ଏ କବଚହିଁ ସେପାଇଁ ଦାୟୀ । ଏହାକୁ ବିଦାୟ କରନ୍ତୁ ।"

"ମନ୍ତ୍ରୀ! ମୁଁ ବି ତାହାହିଁ ଚାହେଁ । କାରଣ ଏହା ପାଖରେ ଥିଲେ କେତେବେଳେ ହୁଏତ ଶାସନର ଗୋପନ କଥା କାହା ପାଖରେ କହିଦେବ । ହୁଏତ ଆମର ବଳ କେତେ, ଦୁର୍ବଳତା କ'ଣ, ସେକଥା ପଡ଼ୋଶୀ ରାଜ୍ୟମାନେ ଜାଣିଯିବେ । କିନ୍ତୁ ଏ କବଚ ନେବ କିଏ ?" ରାଜା ଚିନ୍ତିତ ହୋଇ କହିଲେ ।

ମନ୍ତ୍ରୀ କବଚ ଗ୍ରହଣ କରିବ, ଏପରି ଲୋକଟିଏ ଖୋଜିଲେ । କିନ୍ତୁ ସେତେବେଳକୁ ସେ କବଚ ଗୋଟାଏ ଭୟଙ୍କର ଚିଜ ବୋଲି ସମସ୍ତେ ଜାଣିଗଲେଣି । ଏପରିକି ପୁରସ୍କାର ସହ କବଚ ଦେବା କଥା ଘୋଷଣା ହେବା ସତ୍ତ୍ୱେ ତାକୁ ଗ୍ରହଣ କରିବାକୁ କେହି ଆଗଭର ହେଲେ ନାହିଁ ।

ଅବଶେଷରେ ଦିନେ ମନ୍ତ୍ରୀ ଜଣେ ଯୁବକଙ୍କୁ ଆଣି ରାଜାଙ୍କ ଆଗରେ ଠିଆ କରାଇଦେଲେ ଓ କହିଲେ, "ମହାରାଜ, ଏ ଯୁବକ ଆପଣଙ୍କଠୁଁ କବଚ ନେବାକୁ ପ୍ରସ୍ତୁତ । ତାଙ୍କୁ ସଙ୍ଗେ ସଙ୍ଗେ ଉପଯୁକ୍ତ ପୁରସ୍କାର ବି ଦେବା ଉଚିତ ।"

ରାଜା ସ୍ୱର୍ଣ୍ଣମୁଦ୍ରା ଭର୍ତ୍ତି ଥଳି ସହ ଯୁବକକୁ କବଚ ଦେଲେ । ଯୁବକ କବଚ ପିନ୍ଧିଲା, କିନ୍ତୁ ପଦେ ବି କିଛି କହିଲା ନାହିଁ । ରାଜା ଆଶ୍ଚର୍ଯ୍ୟ ହୋଇ ମନ୍ତ୍ରୀଙ୍କୁ କହିଲେ, "ଏଭଳି ସଯତ ବ୍ୟକ୍ତି ଆମ ରାଜ୍ୟରେ ଅଛନ୍ତି ବୋଲି ଜାଣି ନଥିଲି ।"

ଯୁବକ ଚାଲିଯିବା ପରେ ମନ୍ତ୍ରୀ ହସି କହିଲେ, "ମହାରାଜ, ସେ ଯୁବକଟି ମୂକ । ତେଣୁ କବଚ ପିନ୍ଧି ବି ସେ ନିରାପଦ ।"





# କାକୁଡ଼ି କାବ୍ୟ

ଭୂଷଣ କାଶୀରେ ପାଠ ପଢୁଥିଲା । ପାଠ ପଢ଼ା ଶେଷ ହେବା ମାତ୍ରେ ତାକୁ ଭିନ୍ନ ଭିନ୍ନ ବିଦ୍ୟାଳୟରୁ ଶିକ୍ଷକ ରୂପେ ଯୋଗ ଦେବା ନିମନ୍ତେ ନିମନ୍ତ୍ରଣ ମିଳିଲା । କାରଣ ସେ ଯେପରି ମେଧାବୀ, ସେହିପରି ବିନୟୀ ।

କିନ୍ତୁ ଭୂଷଣ ନିଜ ଗାଁକୁ ଲେଉଟି ଆସିଲା । ତା'ର କାରଣ, ତା' ବାପା ମାଆଙ୍କ ସ୍ୱାସ୍ଥ୍ୟ ମୋଟେ ଭଲ ରହୁ ନଥିଲା ।

ଗାଁକୁ ଆସି ସେ ଦିନଯାକ ବିଲବାଡ଼ିର କାମ ବୁଝା ସୁଝା କରେ । ତା'ପରେ ଘର କାମଦାମରେ ସେ ମାଆର ସହାୟତା କରେ । ସବା ଶେଷରେ, ରାତିରେ ଖିଆପିଆ ପରେ କିମ୍ବା ଖୁବ୍ ସକାଳେ ବସି କବିତା ଲେଖେ । ସେ ଦିଗରେ ତା'ର ପ୍ରବଳ ଆଗ୍ରହ ଥାଏ ।

ଦିନେ ତା' ବାପା କହିଲେ, "ଭୂଷଣ, ମୁଁ ନିଜେ ପାଠଶାଠ ପଢ଼ିନାହିଁ କି କାବ୍ୟ କବିତା ବୁଝେ ନାହିଁ । କିନ୍ତୁ ତୁ ଯେତେବେଳେ କବିତା ଲେଖିବାରେ ଏତେ ଆଗ୍ରହୀ, ମୋର ବିଶ୍ୱାସ ତୁ ନିଶ୍ଚେ ଭଲ କବିତା ଲେଖୁଥିବୁ । କିନ୍ତୁ ଏଠି ତୋର ପ୍ରତିଭା କିଏ ଚିହ୍ନିବ ? ଆମ ରାଜ୍ୟର ରାଜା ପ୍ରତିଭାବାନ କବି ଓ ପଣ୍ଡିତମାନଙ୍କର ବହୁତ ଆଦର କରନ୍ତି । ଥରେ ଯଦି ସେ ତୋ କବିତା ଶୁଣନ୍ତେ, ତେବେ ହୁଏତ ତୋ ଭାଗ୍ୟ ଫିଟି ଯା'ନ୍ତା ।"

"ସତ କଥା । ହେଲେ ରାଜାଙ୍କୁ କବିତା ପଢ଼ି ଶୁଣାଇବାର ସୁଯୋଗ ମୋତେ ମିଳିବ କାହିଁ ?" ଦୀର୍ଘନିଃଶ୍ୱାସ ଛାଡ଼ି ଭୂଷଣ କହିଲା ।

"ଆମ ଏ ଅଞ୍ଚଳର ଜମିଦାର ଯାହାକୁ ସୁପାରିଶ୍ କରିବେ, କେବଳ ସେ ରାଜାଙ୍କୁ ଭେଟିପାରିବ । ଆମ ଜମିଦାର ଜଣେ ସୁଶାସକ ଓ ରାଜଭକ୍ତ ଲୋକ । ତେଣୁ ରାଜା ତାଙ୍କୁ ଶ୍ରଦ୍ଧା କରନ୍ତି ।" ବାପା କହିଲେ ।

ବୁଝି ବିଚାରି କାମ କଲେ ପ୍ରମାଦ ନପଡ଼ଇ ଭଲେ !



"କିନ୍ତୁ ମୁଁ ଜାଣେ, ଜମିଦାର କାବ୍ୟ କବିତାର ବିନ୍ଦୁ ବିସର୍ଗ ବୁଝନ୍ତି ନାହିଁ।" ଭୂଷଣ କହିଲା।

"ସେକଥା ଠିକ୍। କିନ୍ତୁ ସେଥିରେ କ'ଣ ଯାଏ ଆସେ? ଟିକିଏ ଚତୁରତା ସହ କାମ କଲେ ହୁଏତ ସୁଫଳ ମିଳିବ। ଜମିଦାର ତ ଖାଲି ରାଜାଙ୍କ ସହ ଭେଟ ପାଇଁ ସୁପାରିଶ୍ କରିବା କଥା। ମୁଁ ଥରେ ତାଙ୍କୁ କହି ଦେଖେଁ।" ଏହା କହି ବାପା ଜମିଦାରଙ୍କ ଘର ଆଡ଼େ ବାହାରିଗଲେ। ଘଣ୍ଟାକ ପରେ ସେ ଲେଉଟି ଆସି କହିଲେ, "ଭୂଷଣ, ଆଗାମୀ କାଲି ସକାଳେ ତୁ ଯାଇ ଜମିଦାରଙ୍କୁ ତୋ କବିତା ଶୁଣାଇବୁ।"

"ବାପା! ସେ ତ କିଛି ବୁଝନ୍ତି ନାହିଁ। ଅରସିକେଷୁ ରସସ୍ୟ ନିବେଦନମ୍ କିଛି ସୁଖକର କଥା ନୁହେଁ।" ଭୂଷଣ କହିଲା।

"ତୁ ଖାଲି କବିତା ଶୁଣା ଓ ସେ ଯାହା କହିବେ ବିନା ପ୍ରତିବାଦରେ ତାହା ଶୁଣିଯା। ତେଣିକି ଦେଖାଯିବ।" ବାପା କହିଲେ।

ଭୂଷଣ ପରଦିନ ଯାଇ ଜମିଦାରଙ୍କ ପାଖରେ ପହଞ୍ଚିବା ମାତ୍ରେ ଜମିଦାର ହସି ହସି କହିଲେ, "ତମ ବାପା ଠିକ୍ ଜାଣନ୍ତି ଯେ ମୋତେ କବିତା ବହୁତ ଭଲ ଲାଗେ। ପଢ଼ କ'ଣ ଲେଖିଛ। ଶୁଣିବା।"

ଭୂଷଣ ପ୍ରଥମେ ତା'ର ସବୁଠାରୁ ଉତ୍ତମ କବିତା ପଢ଼ି ଶୁଣାଇଲେ। ଜମିଦାର କହିଲେ, "ହୁଃ, ଏଇଟା ରସୋତ୍ତୀର୍ଣ୍ଣ ହେଲା ନାହିଁ। ବୁଝିଲ? ଆଉ ପଢ଼। ରସୋତ୍ତୀର୍ଣ୍ଣ ହେବା ଦରକାର। ରସୋତ୍ତୀର୍ଣ୍ଣ।"

ଭୂଷଣ ବୁଝିଲା ଯେ ଜମିଦାର ରସୋତ୍ତୀର୍ଣ୍ଣ ଶବ୍ଦଟି ଜାଣିଛନ୍ତି। ସେ ଆହୁରି ଗୋଟିଏ ପଢ଼ିଲା। ତା'ପରେ ଆଉ ଗୋଟିଏ। ସବା ଶେଷରେ ସେ ତା'ର ସବୁଠୁଁ କଞ୍ଚା ଓ ହାଲୁକା କବିତାଟି ପଢ଼ିଲା। ନାମ ତା'ର "କାକୁଡ଼"।

"ତୋହ ଭଲି କିଏ ଅଛି କହରେ
କାକୁଡି!
କି ମଧୁର ରଡ଼ି କରୁ ଖାଇଲେ କାମୁଡ଼!"

ଜମିଦାର ପାଟି କରି କହିଲେ, "ବାଃ,

ବାଃ ! ଏହାକୁ ସିନା କହନ୍ତି ରସୋତ୍ତୀର୍ଣ୍ଣ କବିତା ! କ'ଣ ଏହାର ନାମ ?"

"ଆଜ୍ଞା, ଏହାର ନାମ କାକୁଡ଼ି ।"

"ନା, ଏହାର ନାମ ହେବ କାକୁଡ଼ି କାବ୍ୟ । ବୁଝିଲ ? ହଁ, ଆଉ ଗୋଟାଏ କଥା । ମୁଁ ଆମ ରାଜାଙ୍କ ପାଖକୁ ଏ ମୁଲକ ତରଫରୁ କେତେଥର କେତେ ଭେଟି ପଠାଇଛି— କଖାରୁ, କାକୁଡ଼ି ସମେତ । କିନ୍ତୁ ଥରେ ବି କବିଟିଏ ପଠାଇବାର ସୁଯୋଗ ପାଇ ନଥିଲି । ତମେ ମୋ ସୁପାରିଶ୍ ନେଇ ରାଜାଙ୍କ ପାଖକୁ ଯାଅ । ତାଙ୍କୁ କବିତା ଶୁଣାଇବ । ଖବର୍-ଦାର୍ ! ପ୍ରଥମେ ଏହି କାକୁଡ଼ି କାବ୍ୟ ପଢ଼ି ଶୁଣାଇବ । ମୁଁ ଏଇଟା ବାଛି ଦେଉଛି ବୋଲି କହିବ । ବୁଝୁଛ ନା ନାହିଁ ?"

"ବୁଝୁଛି ଆଜ୍ଞା ।" ଭୂଷଣ ନମ୍ର ସ୍ୱରରେ କହିଲା ।

"ବାସ୍ । ମୁଁ ଚିଠାଉ ଲେଖି ଦେଉଛି ।" ଏହା କହି ଜମିଦାର ରାଜାଙ୍କ ପାଖକୁ ଚିଠି ଲେଖିଲେ ଓ ଭୂଷଣ ହାତରେ ଦେଲେ ।

ଦୁଇ ତିନିଦିନ ଭିତରେ ପ୍ରସ୍ତୁତ ହୋଇ ଭୂଷଣ ରାଜଧାନୀକୁ ବାହାରିଗଲା । ସେଠାରେ ଦୁଇଦିନ ଅପେକ୍ଷା କରିବା ପରେ ରାଜାଙ୍କ ପାଖରୁ ଡାକରା ଆସିଲା । ସେଉଁ କବିତାଟି ଜମିଦାର ପ୍ରଥମେ ନାପସନ୍ଦ କରିଦେଇଥିଲେ. ଭୂଷଣ ସେହି କବିତାହିଁ ପଢ଼ିଲା । ରାଜା ମୁଗ୍ଧ ହୋଇ ଶୁଣିଲେ ଓ କହିଲେ, "ଆଉ ଥରେ ପଢ଼ !" ଭୂଷଣ ପୁଣି ପଢ଼ିଲା । ରାଜା ଭୂଷଣର ଅନ୍ୟ କିଛି କିଛି କବିତା ବି ଦେଖିଲେ ଓ



ନିଜ ହାତକୁ ନେଇ ପଢ଼ିଲେ । ତା'ପରେ କହିଲେ, "ଭୂଷଣ ! ତମେ ଯେ ଅସାମାନ୍ୟ କବି, ସେ ବିଷୟରେ ମୋର ସନ୍ଦେହ ନାହିଁ । କିନ୍ତୁ ତମ ସେଠିକା ଜମିଦାର ଯେ କବିତାର ଏଡ଼େ ବଡ଼ ସମଝଦାର, ସେକଥା ମୁଁ ଜାଣି ନଥିଲି !"

ଏହା କହି ରାଜା ଜମିଦାରଙ୍କୁ ଡକାଇ ପଠାଇଲେ ଓ ଭୂଷଣକୁ ସମ୍ମାନ ଦେବା ରାଜକବି ପଦରେ ନିଯୁକ୍ତ ଦେବା ସଙ୍ଗେ ସଙ୍ଗେ ଜମିଦାରଙ୍କୁ ବି ସମ୍ମାନ ଦେଲେ ।

ରାତରେ ରାଜାଙ୍କ ସହ ନୈଶାହାର ବେଳେ ଜମିଦାର କହିଲେ, "ମଣିମା ! କାକୁଡି କାବ୍ୟ ଭଳି କାବ୍ୟ ଆମ ଭାଷାରେ ଆଉ ନାହିଁ !"

"କାକୁଡ଼ି କାବ୍ୟ ? ସେଇଟା କ'ଣ ?" ରାଜା ଆଶ୍ଚର୍ଯ୍ୟ ହୋଇ ପଚାରିଲେ ।

"କାହିଁକି ମଣିମା ? ଭୂଷଣ କ'ଣ ତାହା ଆପଣଙ୍କୁ ଶୁଣାଇ ନାହିଁ ? ତୋହ ଭଳି କଏ ଅଟ୍ଟ କହରେ କାକୁଡ଼ି ! କି ମଧୁର ରଡ଼ି କରୁ ଖାଇଲେ କାମୁଡ଼ି ! ଆହା, ଆହା ! କି ରସୋତ୍ତୀର୍ଣ୍ଣ କବିତା !" ଜମିଦାର ମୁଗ୍ଧ ହୋଇ କହିଲେ ।

ସେତେବେଳକୁ ରାଜା ହସି ହସି ବେଦମ୍ ହେଲେଣି । ସେ ଭୂଷଣକୁ ନିଜ ପାଖକୁ ଡ଼ାକି ଚୁପି ଚୁପି ଏହାର ରହସ୍ୟ ପଚାରିଲେ । ଭୂଷଣ କହିଲା, "ମଣିମା, ଏକଥା ସତ ଯେ ମୁଁ କେଉଁ କବିତା ଆପଣଙ୍କ ଆଗରେ ପଢ଼ିବି ସେ ବାଗରେ ଜମିଦାର ମୋତେ ବହୁତ ସାହାଯ୍ୟ କରିଛନ୍ତି । ଯେଉଁ କବିତା ସେ ମୋତେ ବୁଝିଲେ ନାହିଁ, ମୁଁ ସେଇଟାହିଁ ପଢ଼ିଲି ।"

ରାଜା ଆହୁରି ହସିଲେ ।

ଭୂଷଣ ରାଜକବି ଭବନରେ ସୁନ୍ଦର ଘରଟିଏ ପାଇଲା । ବାପା ମାଆ ଆସି ସେଠି ରହିଲେ । ସେମାନଙ୍କ ଦେହ ଆନନ୍ଦରେହିଁ ପୁରା ଭଲ ହୋଇ ଯାଇଥାଏ!






[ ୧୭ ]

[ଭଲ୍ଲୁକଚର୍ମଧାରୀମାନେ ଉଗ୍ରଦତ୍ତଙ୍କୁ ସୁଡ଼ଙ୍ଗ ମାର୍ଗରେ ନିଜ ସର୍ଦ୍ଦାର କନ୍ଧ ପାଖକୁ ନେଇଗଲେ । କନ୍ଧ କହିଲା, ବ୍ୟାଘ୍ରଚର୍ମଧାରୀ ଦଳର ନେତା ଏକପାଦକୁ ସଂହାର କରିବା ନିମନ୍ତେ ସେ ରାକ୍ଷସମାନଙ୍କ ସହାୟତା କାମନା କରେ । ସେ ଉଗ୍ରଦତ୍ତଙ୍କୁ ଚେତାଇଦେଲା କି ଏକପାଦକୁ ମାରିବା ସହଜ ନୁହେଁ । କାରଣ ଯିଏ ଯାହାର ରକ୍ତ ଦେଖିବ, ଯିଏ ମରିଯିବ । ଯିଏ ତା'ର ରକ୍ତ ଦେଖିବ, ଯିଏ ବି ମରିଯିବ । ତା'ପରେ···]

ବ୍ୟାଘ୍ରଚର୍ମଧାରୀଙ୍କ ନେତା ଏକପାଦର ଏଭଳି ଅପୂର୍ବ ଶକ୍ତି କଥା ଶୁଣି ଉଗ୍ରଦତ୍ତ ଆଶ୍ଚର୍ଯ୍ୟ ହେଲେ ।

ତେଣେ ସାମନ୍ତ ରଜା ସୁଦର୍ଶନଙ୍କ କନ୍ୟା ଚନ୍ଦ୍ରଲେଖାଙ୍କର କ'ଣ ହେଲା, ସେକଥା ଜାଣିବା ସକାଶେ ମଧ୍ୟ ତାଙ୍କ ମନ ବ୍ୟାକୁଳ ହେଉଥାଏ ।

ସର୍ଦ୍ଦାର କନ୍ଧ ଏକପାଦ ବିଷୟରେ ଆହୁରି ମଧ୍ୟ କହିଲା, "ତାକୁ ମାରିବା ବାସ୍ତବିକ କଠିନ କଥା । ଥରେ ମୋ ଅନୁଚରମାନେ ସୁଯୋଗ ପାଇ ତାକୁ ବନ୍ଦୀ ବନାଇଥିଲେ । ତେବେ ସେମାନେ ତାକୁ ମାରିବା ପୂର୍ବରୁ ସେ ନିଜେ ଗୋଟିଏ ଛୁରୀରେ ନିଜ ଦେହରୁ ରକ୍ତ ବାହାର କରି ଦେଇଲା । ସେ ରକ୍ତ




ଦେଖିବା ମାତ୍ରେ ମୋ ଅନୁଚରମାନେ ଟଳି ପଡ଼ିଲେ ।

"ଅର୍ଥାତ୍, ତା' ଆଗକୁ ଯିବାହିଁ ବିପଦର କଥା । ସେ ଦୃଷ୍ଟିରୁ ତାକୁ ମାରିବା କିପରି ?" ଉଗ୍ରଦତ୍ତ ନିରାଶ କଣ୍ଠରେ ପ୍ରଶ୍ନ କଲେ ।

ଉଗ୍ରଦତ୍ତ ଏହିପରି ନାନା କଥା ଭାବୁଛନ୍ତି, ସର୍ଦ୍ଦାର କନ୍ଧ ତାଙ୍କ ପାଖକୁ ଯାଇ କହିଲା, "ଉଗ୍ରଦତ୍ତ, ତମେ କ'ଣ ଭାବୁଛ ? ତମ ପାଳକ ପିତାଙ୍କ ସହାୟତା ପ୍ରାର୍ଥନା କରି ତାଙ୍କ ପାଖକୁ ସନ୍ଦେଶ ପଠାଇବା ନା ନାହିଁ ?"

ସର୍ଦ୍ଦାର କନ୍ଧ କିଛି କହିବା ପୂର୍ବରୁ ରୁଦ୍ର କହିଲା, "ମୋତେ ଯିବାକୁ ଅନୁମତି ଦିଅ । ମୁଁ କପିଳପୁର ଯାଇ ଉଗ୍ରାକ୍ଷଙ୍କୁ ସବୁ କଥା କହି ତାଙ୍କ ସହାୟତା ହାସଲ କରିବ ।"

ଉଗ୍ରଦତ୍ତ ଓ କନ୍ଧ ଏଥିରେ ସମ୍ମତ ହେଲେ । ସର୍ଦ୍ଦାର କନ୍ଧ ତା'ର ଚେତକ ନାମକ ଜଣେ ଅନୁଚରକୁ ଡାକି କହିଲା, "ଏ ବାବୁଙ୍କୁ ଗୋଟିଏ ପକ୍ଷୀ ଉପରେ ବସାଇ ନେଇଯାଅ । କପିଳପୁରର ବଣ ଭିତରେ ନେଇ ଛାଡ଼ିବ ।"

ଚେତକ ଡରିଯାଇ କହିଲା, "ସର୍ଦ୍ଦାର! ତମେ ତ ଜାଣ, ଯେତେବେଳଠୁଁ ବ୍ୟାଘ୍ର-ଚର୍ମଧାରୀମାନେ ଉଗ୍ରଦତ୍ତ ରୁଦ୍ର ଓ ଅରୁଦ୍ରଙ୍କୁ ଏଠାକୁ ଧରିନେଇ ଆସିଲେଣି, ସେତେ-ବେଳଠୁଁ ରାକ୍ଷସରାଜ ଉଗ୍ରାକ୍ଷ ଓ ତାଙ୍କ ଅନୁଚରମାନେ ଉତ୍ତେଜିତ ଭାବରେ ବଣକୁ ଜଗି ରହିଛନ୍ତି । ଭୟଙ୍କର ପକ୍ଷୀଟିଏ ଅବତରଣ କରିବାର ଦେଖିପକାଇବା ମାତ୍ରେ ସେମାନେ ଆକ୍ରମଣ କରି ଆମକୁ ମାରିଦେବେ । ଆମେ କିଏ ସେକଥା ବୁଝିଲା ଭଳି ଧୈର୍ଯ୍ୟ ସେମାନଙ୍କର ନଥିବ ।"

ଉଗ୍ରଦତ୍ତ ଟିକିଏ ଚିନ୍ତା କରି କହିଲା, "ତେବେ ଆମକୁ ଗୋଟାଏ କାମ କରିବାକୁ ପଡ଼ିବ । ଆକାଶରୁ ରୁଦ୍ର ଏପରି କିଛି ଚିଜ ତଳକୁ ପଠାଇବା ଦରକାର, ଯାହା ଦ୍ୱାରା ତା'ର ପରିଚୟ ଜଣା ପଡ଼ିଯିବ । ତା'ପରେ ଯାଇ ପକ୍ଷୀ ତଳକୁ ଓହ୍ଲାଇବ । ଏକଥା ସତ ଯେ ଆମେମାନେ ହରଣଚାଲ ହୋଇ ଅସିବା

ଫଳରେ ମୋ ପାଳକ ପିତା ଉଗ୍ରାକ୍ଷ ଭୀଷଣ କ୍ରୁଦ୍ଧ ହୋଇଥିବେ ଓ ଭୟଙ୍କର ପକ୍ଷୀମାନଙ୍କୁ ଦେଖିବା ମାତ୍ରେ ଆକ୍ରମଣ କରିବା ନିମନ୍ତେ ନିର୍ଦ୍ଦେଶ ଦେଇଥିବେ । ତେବେ ଏଇଆ କରାଯାଇ ପାରେ । ମୁଁ ଖଣ୍ଡିଏ ଚିଠି ଲେଖିଦେବି । କୌଣସି ଶର ତିଜ ସାହାଯ୍ୟରେ ସେ ଚିଠି ତଳକୁ ସାବଧାନରେ ପକାଇବାକୁ ପଡ଼ିବ । ଚିଠି ଖଣ୍ଡିକ ପାଇଲେ ମୋ ପାଳକ ପିତା ସବୁ ଅବସ୍ଥା ବୁଝିପିବେ । ତା'ପରେ ନିରାପଦରେ ଓହ୍ଲାଇ ରୁଦ୍ର ବାକି ସବୁ କଥା ବୁଝାଇଦେବ ।"

ସର୍ଦ୍ଦାର କନ୍ଧ, ରୁଦ୍ର ତଥା ଅନ୍ୟ ମାନଙ୍କୁ ଏ ପ୍ରସ୍ତାବ ବେଶ୍ ଯୁକ୍ତିଯୁକ୍ତ ମନେ ହେଲା । ସର୍ଦ୍ଦାର କନ୍ଧ କହିଲା, "ଯାହା ପାଇଁ ଆବଶ୍ୟକୀୟ ବ୍ୟବସ୍ଥାମାନ କର ।" ଏହା ପରେ ଉଗ୍ରଦତ୍ତ ବିଶ୍ରାମ କରିବା ନିମନ୍ତେ ଗୋଟିଏ ବିଶ୍ରାମାଗାର ଦେଖାଇଦେଇ ଚାଲିଗଲା ।

ଉଗ୍ରାକ୍ଷ ସେଣେ ତା' ଦୁର୍ଗ ଆଗରେ ଖଣ୍ଡିଏ ପଥର ଉପରେ ଚିନ୍ତାମଗ୍ନ ହୋଇ ବସିଥିଲା । ଦୁଇଜଣ ଅନୁଚର ଦୌଡ଼ି ଆସି ଧଇଁସଇଁ ହୋଇ କହିଲେ, "ମାଲିକ ! ବଡ଼ ଆଶ୍ଚର୍ଯ୍ୟର କଥା ଦେଖିଲୁଁ । କହିଲେ ଆପଣ ବିଶ୍ୱାସ କରିବେ ନାହିଁ । ଶତ୍ରୁ ପକ୍ଷର ବୁଦ୍ଧି ବଣା ହେଲାଣି ବୋଲି ମନେ ହୁଏ ।"

"କ'ଣ ହୋଇଛି ସ୍ପଷ୍ଟ କରି ନକହି ଏତେ ଭୂମିକା ଦେବା କ'ଣ ଦରକାର ? କାହାର



ବୁଦ୍ଧି ବଣା ହେଲାଣି ?" ଉଗ୍ରାକ୍ଷ ଆଖି ଲାଲ୍ କରି ସେ ଅନୁଚରମାନଙ୍କୁ ପଚାରିଲା ।

ଅନୁଚରମାନେ ତା'ର ଭଙ୍ଗୀ ଓ ସ୍ୱର ଶୁଣି ପ୍ରଥମେ ଡରିଗଲେ । ତା'ପରେ କହିଲେ, "ମାଲିକ ! ବହ୍ନିଦ୍ୱୀପରୁ କୌଣସି ଆଗନ୍ତୁକ ଭୟଙ୍କର ପକ୍ଷୀ ଉପରେ ସବାର୍ ହୋଇ ବଣ ମୂଳକ ଉପରେ ଉଡ଼ି ବୁଲୁଛି । ସେତିକି ନୁହେଁ, ତଳକୁ ଓହ୍ଲାଇବା ନିମନ୍ତେ ଚେଷ୍ଟା ବି କରୁଛି । ଆମେ ତାକୁ ଲକ୍ଷ୍ୟ କରି ଗଦା ଫୋପାଡ଼ିଲୁଁ ଓ ତୀର ମାରିଲୁଁ । କିନ୍ତୁ ଫଳ କିଛି ହେଲା ନାହିଁ । ସେ ପକ୍ଷୀ ନା ଯାଉଛି, ନା ତଳେ ବସି ପାରୁଛି ! ପକ୍ଷୀର ସବାର୍ ତଳକୁ କୌଣସି ତିଜ ଫୋପାଡ଼ି ଦେଇଛି ।"



"କି ଚିଜ ? ତାହା ଆଣିଛ ?" ଉଗ୍ରାକ୍ଷ କଡ଼ା କଣ୍ଠରେ ପଚାରିଲା ।

"ନା ମାଲିକ । କେଉଁଠି କୌଣସି ଗଛ ମୂଳରେ ତାହା ପଡ଼ିଛି । କେତେଜଣ ତାକୁ ଖୋଜୁଛନ୍ତି ।" ସେ ଦୁହେଁ କହିଲେ ।

"ତମେ ଦୁଇଟା ବୁଦ୍ଧୁ । ଚାଲ, ଚାଲ, କେଉଁଠି ସେ ଚିଜ ପଡ଼ିଛି, ମୋତେ ଦେଖାଇ-ଦେବ ଚାଲ ।" ଉଗ୍ରାକ୍ଷ ହୁଙ୍କାର ଛାଡ଼ି କହିଲା ଓ ସେ ଦୁଇ ଅନୁଚରଙ୍କ ସହ ବାହାରିଗଲା । ଉଗ୍ରଦତ୍ତ ହରଣଚାଲ ହୋଇଯିବା ପରଠାରୁ ଉଗ୍ରାକ୍ଷ ସବୁ କଥାରେ ଚିଡ଼ି ଯାଉଥିଲା ।

ଉଗ୍ରାକ୍ଷ ଅଳ୍ପ ଦୂର ଯିବା ପରେ ଦେଖିଲା, ଗୋଟିଏ ଗଛ ମୂଳରେ କେତେଜଣ ରାକ୍ଷସ କୋଳାହଳ କରୁଛନ୍ତି । ଉପରେ ଭୟଙ୍କର ପକ୍ଷୀଟିଏ ଚକ୍ରାକାରରେ ଉଡୁଛି । ଉଗ୍ରାକ୍ଷ ଆସୁଥିବାର ଦେଖି ସେମାନେ ଚୁପ୍ ହୋଇଗଲେ । ସେମାନଙ୍କ ଭିତରୁ ଜଣେ ଦୌଡ଼ି ଆସି ତାକୁ ଖଣ୍ଡିଏ ରଙ୍ଗୀନ୍ କନାରେ ବନ୍ଧା ହୋଇଥିବା ଚିଠିଟିଏ ଦେଖାଇଲା ।

"ମାଲିକ ! ଏ ଭୟଙ୍କର ପକ୍ଷୀ ଉପରେ ତିନିଜଣ ସବାର୍ ହୋଇଛନ୍ତି । କିନ୍ତୁ ସେମାନେ କେହି ବ୍ୟାଘ୍ରଚର୍ମଧାରୀ ନୁହନ୍ତି । ଦୁଇଜଣ ଭଲ୍ଲୁକଚର୍ମଧାରୀ । ସେମାନେ ଆମକୁ ଦଗା ଦେବା ଉଦ୍ଦେଶ୍ୟରେ ସେପରି ବେଶ ହୋଇଛନ୍ତି କି ନା କହିବା ସହଜ ନୁହେଁ । ଏ ଚିଜ ସେମାନେ ତଳକୁ ପକାଇ ଦେଇଛନ୍ତି ।" ଜଣେ ରାକ୍ଷସ କହିଲା ।

ଉଗ୍ରାକ୍ଷ ଚିଠିଟି ଖୋଲିଲା ଓ ଆହୁରି ରାଗିଯାଇ କହିଲା, "ଆରେ ବୋକା, ମଣିଷଙ୍କ ଲେଖା ଏ ଚିଠି ମୋତେ ଦେଇ ଲାଭ କ'ଣ ?"

ସେତିକିବେଳେ ତା' ଆଖି ଜଣେ ମଣିଷ ଉପରେ ପଡ଼ିଲା । ତାକୁ ଡାକି ଆଣି ସେ ଚିଠିଟି ପଢ଼ିବାକୁ ନିର୍ଦ୍ଦେଶ ଦେଲା । ଲୋକଟି ଚିଠି ପଢ଼ି ହସି କହିଲା, "ରାକ୍ଷସରାଜ ! ଏ ଚିଠି ପଠାଇଛନ୍ତି ତମ ପାଳିତ ପୁତ୍ର ଉଗ୍ରଦତ୍ତ । ସେ ବର୍ତ୍ତମାନ ବହ୍ନିଦ୍ୱୀପରେ । ଯେଉଁ ତିନିଜଣ ଲୋକ ବର୍ତ୍ତମାନ ଆମ ଉପରେ ଉଡୁଥିବା ଭୟଙ୍କର ପକ୍ଷୀ ଉପରେ ସବାର୍ ହୋଇଛନ୍ତି, ତହିଁ ଭିତରୁ ଜଣେ ହେଲେ ରୁଦ୍ର । ତାଙ୍କ




ସହ ଅଛନ୍ତି ଦୁଇଜଣ ଭଲ୍ଲୁକଚର୍ମଧାରୀ । ସେମାନେ ତୁମ ପାଇଁ କିଛି ବାର୍ତ୍ତା ଆଣିଛନ୍ତି ।"

"ଓହୋ ! ମୋ ଉଗ୍ରଦତ୍ତ ତେବେ ନିରାପଦରେ ଅଛି ! ବର୍ତ୍ତମାନ ସେ ସତରେ କିଭଳି ଅବସ୍ଥାରେ ରହିଛି କିଏ ଜାଣେ ! ସେ ନିଜେ ନ ଆସି ରୁଦ୍ରକୁ ପଠାଇଲା କାହିଁକି ? ତା' ପ୍ରତ୍ୟାବର୍ତ୍ତନ ପାଇଁ ମୁଁ କେତେ ବ୍ୟାକୁଳ ହେଉଥିବି, ଏତକ କ'ଣ ସେ ବୁଝିପାରିଲା ନାହିଁ ? ସେ ଯାହାହେଉ, ତୁମେମାନେ ସେ ଭୟଙ୍କର ପକ୍ଷୀକୁ ତଳେ ଓହ୍ଲାଇବା ନିମନ୍ତେ ସଙ୍କେତ ଦିଅ ।" ଉଗ୍ରାକ୍ଷ ବ୍ୟସ୍ତ ହୋଇ କହିଲା ।

ସଙ୍ଗେ ସଙ୍ଗେ ରାକ୍ଷସ ତଥା ଆଖପାଖରେ ଥିବା ମଣିଷମାନେ ଗଛ ଉଢ଼, କିଏ ବା ଖୋଲା ସ୍ଥାନରେ ଗଛ ଡାଳ ହଲାଇ ଓ ପାଟି କରି ସେ ପକ୍ଷୀକୁ ଅବତରଣ କରିବାକୁ ସଙ୍କେତ ଦେଲେ । ପକ୍ଷୀ ଏଥର ମୁଣ୍ଡ ତଳକୁ କରି ଚକ୍ରାକାରରେ ଧୀରେ ଧୀରେ ଖସିବାକୁ ଲାଗିଲା ।

ପକ୍ଷୀ ମାଟିରେ ବସିବା ପୂର୍ବରୁହିଁ ରୁଦ୍ର ତା' ପିଠିରୁ ଲୁଦି ପଡ଼ି ଉଗ୍ରାକ୍ଷ ଆଡ଼େ ଦୌଡ଼ିବାକୁ ଲାଗିଲା । ନିଜ ମୂଲକକୁ ଫେରି-ଆସିପାରିଥିବା ଯୋଗୁଁ ତା' ମନରେ ଆନନ୍ଦ ଉଚ୍ଛୁଳି ଉଠୁଥାଏ ।

ଉଗ୍ରାକ୍ଷ ବି ତାକୁ ଦେଖି ନିଜ ଖୁସି ସମ୍ଭାଳି ପାରିଲାନାହିଁ । ସେ ଥରେ ତାକୁ ଶୂନ୍ୟକୁ ଟେକି ଧରି ତା'ପରେ ତଳେ ଠିଆ କରାଇ ଦେଲା ଓ ତାକୁ ଆପାଦମସ୍ତକ ନିରୀକ୍ଷଣ କରି କହିଲା, "ଉଗ୍ରଦତ୍ତ କୁଶଳରେ ଅଛି ତ ? ତୋ ସାଥିରେ ସେ ଆସିଲା ନାହିଁ କାହିଁକି ? ଅରୁଦ୍ରର ଖବର କ'ଣ ?"

"ସର୍ଦ୍ଦାର ! ଉଗ୍ରଦତ୍ତ ଭଲ ଅଛି । ତେବେ ଅରୁଦ୍ର ଏବଂ ସାମନ୍ତ ରାଜା ସୁଦର୍ଶନଙ୍କ କନ୍ୟା ଚନ୍ଦ୍ରଲେଖା ବ୍ୟାଘ୍ରଚର୍ମଧାରୀଙ୍କ ହାତରେ ବନ୍ଦୀ ହୋଇଛନ୍ତି । ଯେ ପର୍ଯ୍ୟନ୍ତ ବ୍ୟାଘ୍ରଚର୍ମଧାରୀଙ୍କ ନେତା ଏକପାଦକୁ ଦମନ କରା ନ ହୋଇଛି, ସେ ପର୍ଯ୍ୟନ୍ତ ଉଗ୍ରଦତ୍ତ ବୋଧହୁଏ ଏଠାକୁ ଆସିପାରିବେ ନାହିଁ କି ରାଜକୁମାରୀ ଚନ୍ଦ୍ରଲେଖା ଓ ଅରୁଦ୍ରକୁ ବି




ଆମେ ମୁକ୍ତ କରିପାରିବା ନାହିଁ । ଏକପାଦଙ୍କୁ ନିଧନ କରିବା ଦିଗରେ ଭଲ୍ଲୁକଚର୍ମଧାରୀଙ୍କ ସର୍ଦ୍ଦାର କନ୍ଧ ଓ ଉଗ୍ରଦତ୍ତ ଆପଣଙ୍କ ସହାୟତା କାମନା କରୁଛନ୍ତି ।" ରୁଦ୍ର ସ୍ପଷ୍ଟ ଭାବରେ କହିଲା ।

"ଉଗ୍ରଦତ୍ତ ବିପଦରେ ପଡ଼ିଥିବ ଆଉ ମୁଁ ଧୈର୍ଯ୍ୟ ଧରି ବସି ପାରିବି ? ସେ ସହାୟତା ମାଗିବା ଦରକାର କ'ଣ ? ସେ ଯାହା ଚାହେଁ, ସେତିକି ଜାଣିବା ମାତ୍ରେ ସେ ଦିଗରେ ମୋର ସବୁ ଶକ୍ତି ଖଟାଇ ଯାହା କରିଯାଇ ପାରେ ମୁଁ ତାହା କରିବି । ସେ ମୋ ନୟନ ପିତୁଳା । ମୁଁ ସର୍ବଦା ତା' ବାଟକୁ ଅନାଇ ବସିଛି । ମୋ ପରେ ତ ପୁଣି ସେ ହେବ ଏ ଅରଣ୍ୟ-ରାଜ୍ୟର ରାଜା !" ଉଗ୍ରାକ୍ଷ ଉତ୍ତେଜିତ ଭାବରେ କହିଲା ।

ଉଗ୍ରାକ୍ଷ ଟିକିଏ ଶାନ୍ତ ହେବା ପରେ ରୁଦ୍ର ବହ୍ନିଦ୍ୱୀପର ହାଲ୍‌ଚାଲ୍ ତାଙ୍କୁ ବତାଇଲା । ସେଠାରେ ଦୁଇଦଳ କିପରି ଭୀଷଣ ଭାବରେ ପରସ୍ପର ବିରୋଧ କରୁଥିଲେ, ଭଲ୍ଲୁକଚର୍ମଧାରୀମାନଙ୍କ ସର୍ଦ୍ଦାର କନ୍ଧ କିପରି ଜଣେ ସହୃଦୟ ବ୍ୟକ୍ତି ଏବଂ ତାହାରି ଯୋଗୁଁ କିପରି ଉଗ୍ରଦତ୍ତ ନିରାପଦରେ ରହିଛନ୍ତି, ସେ ଏସବୁ ବର୍ଣ୍ଣନା କଲା । ତା'ପରେ ସେ କହିଲା, "ଆପଣମାନଙ୍କୁ ନୌକା ଚଢ଼ି ବହ୍ନିଦ୍ୱୀପ ଯିବାକୁ ପଡ଼ିବ । ସେଠାରେ ପହଞ୍ଚିବାକୁ ଦୁଇଦିନ ଦୁଇରାତି ଲାଗିବ । ମୋ ସହିତ ଆସିଥିବା ଭଲ୍ଲୁକଚର୍ମଧାରୀ ଦୁଇଜଣଙ୍କ ଭିତରୁ ଜଣେ ପଥ ଦେଖାଇବେ ।" ଏହା କହି ରୁଦ୍ର ଶମ୍ଭୁକ ନାମକ ଭଲ୍ଲୁକଚର୍ମଧାରୀ ସହ ଉଗ୍ରାକ୍ଷର ପରିଚୟ କରାଇଦେଲା । ଏହାପରେ ପକ୍ଷୀ ଆରୋହଣ କରି ରୁଦ୍ର ଅନ୍ୟ ଲୋକଟି ସହ ବହ୍ନିଦ୍ୱୀପକୁ ପ୍ରତ୍ୟାବର୍ତ୍ତନ କଲା । ମାର୍ଗଦର୍ଶକ ଶମ୍ଭୁକ ରହିଗଲା ।

ଉଗ୍ରାକ୍ଷ ନିଜ ସୈନ୍ୟମାନଙ୍କ ଭିତରୁ ପାଞ୍ଚଶହ ଜଣଙ୍କୁ ବାଛିଲା ଓ ସେମାନଙ୍କୁ ଧରି ବହ୍ନିଦ୍ୱୀପ ଅଭିମୁଖେ ବାହାରି ପଡ଼ିଲା । ସେମାନେ ବଣ ଜଙ୍ଗଲ ପାରି ହୋଇ ପ୍ରାୟ ସପ୍ତାହେ ଧରି ବାଟ ଚାଲି ସମୁଦ୍ର କୂଳରେ ପହଞ୍ଚିଲେ ।



ରାକ୍ଷସମାନଙ୍କ ଭିତରୁ ଅନେକେ ପୂର୍ବରୁ ସମୁଦ୍ର ଦେଖି ନଥିଲେ । ସେ ଜଳରାଶି ଦେଖି ସେମାନେ ନିଜ ନିଜ ଭିତରେ କହୁଥା'ନ୍ତି, "ଏହାର ଅନ୍ତ କାହିଁ ? ଏହା ସେ ପାଖରେ କ'ଣ କୌଣସି ଦେଶ ଅଛି ? ଆମକୁ କେହି ପ୍ରତାରିତ କରୁନାହିଁ ତ ? ଏହି ଜଳରାଶି ଭିତରେ ହୁଏତ ଆମର ପ୍ରାଣ ଯିବ ।"

ସେମାନଙ୍କର ସେସବୁ ମନ୍ତବ୍ୟ ଉଗ୍ରାକ୍ଷ କାନରେ ପଡ଼ିଲା । ସେ ଧମକ ଦେଇ କହିଲା "ଚୁପ୍ କର ! ବର୍ତ୍ତମାନ କାମରେ ଲାଗିଯାଅ । ବଡ଼ ବଡ଼ ଗଛ କାଟି ସେଥିରେ ନୌକା ବନାଇବାକୁ ହେବ । ଗୋଟିଏ ଗୋଟିଏ ନୌକାରେ ପଚିଶ ସରିକି ଲୋକ ବସିବେ । ସାବଧାନ, କାମ ଭଲ ନହେଲେ ତମମାନଙ୍କ ଆଶଙ୍କା ସତ୍ୟ ହେବ; ସମୁଦ୍ରରେ ପ୍ରାଣ ଯିବ ।"

ଉଗ୍ରାକ୍ଷର ନିର୍ଦ୍ଦେଶରେ ରାକ୍ଷସମାନେ କାମ କରିବାକୁ ଲାଗି ପଡ଼ିଲେ । ବଡ଼ ବଡ଼ ଗଛ କାଟି ସେମାନେ ନୌକା ତିଆରି କଲେ । ଦଶଟି ନୌକା ତିଆରି ହୋଇଗଲା ।

ଦୁଇ ତିନିଦିନ ବିତିଗଲା । ଦିନେ ସକାଳେ ସେମାନେ ଦଳଯାତ୍ରା ପାଇଁ ପ୍ରସ୍ତୁତ ହେଲେ । ଉଗ୍ରାକ୍ଷ ତା' ନୌକାରେ ବସିବାକୁ ଯାଉଛି, କପିଳପୁରର ରାଜା ଚନ୍ଦ୍ରସେନଙ୍କଠାରୁ ଜଣେ ଦୂତ କୌଣସି ସନ୍ଦେଶ ଧରି ଆସି ପହଞ୍ଚିଲା । ଦୂତ ମୁହଁରୁ ସବୁ ଶୁଣି ଉଗ୍ରାକ୍ଷ ଜାଣିଲେ କି ରାଜା ଚନ୍ଦ୍ରସେନ ବହ୍ନିଦ୍ୱୀପରେ ଘଟୁଥିବା ସବୁ ବ୍ୟାପାର ଜାଣନ୍ତି । ଚନ୍ଦ୍ରସେନ କହି ପଠାଇଥିଲେ କି ସେ ନିଜ ସୈନ୍ୟ ସାମନ୍ତ ନେଇ ଉଗ୍ରାକ୍ଷର ସହାୟତା କରିବାକୁ ପ୍ରସ୍ତୁତ ।

ଦୂତ କହିଲା, "ରାକ୍ଷସରାଜ ! ରାଜକୁମାର ଉଗ୍ରଦତ୍ତ ଓ ସାମନ୍ତରାଜାଙ୍କ କନ୍ୟା ଚନ୍ଦ୍ରଲେଖାକୁ ବ୍ୟାଘ୍ରଚର୍ମଧାରୀମାନେ ହରଣକରି ନେଇ ଯାଇଛନ୍ତି, ଏକଥା ଜାଣି ମହାରାଜା ଚନ୍ଦ୍ରସେନ ବଡ଼ ଉଦ୍‌ବିଗ୍ନ । ଦ୍ରୋହୀ ନାଗବର୍ମା ସହ ମହାରାଜା ଚନ୍ଦ୍ରସେନ ଯେଉଁ ଯୁଦ୍ଧ କରିଥିଲେ ସେଥିରେ ସାମନ୍ତ ରାଜା ସୁଦର୍ଶନ ଅନେକ ପ୍ରକାରେ ସାହାଯ୍ୟ କରିଥିଲେ । ସେ ପରିବାର ପୁଣି ମହାରାଣୀଙ୍କ ବନ୍ଧୁବାନ୍ଧବ । ରାଜକୁମାର ଅମିତସେନ୍‌ଙ୍କ ସହ ରାଜକୁମାରୀ

ଚନ୍ଦ୍ରଲେଖାଙ୍କ ବିବାହ ହେଉ, ଏହାହିଁ ରାଜା ରାଣୀଙ୍କ କାମନା ଥିଲା । ବର୍ତ୍ତମାନ ରାଜକୁମାରଙ୍କୁ ରକ୍ଷା କରିବା ନିମନ୍ତେ ଯାହା ଦରକାର ତାହା କରିବାକୁ ମହାରାଜା ପ୍ରସ୍ତୁତ ।"

ଉଗ୍ରାକ୍ଷ କ୍ରୋଧରେ ଗଦା ଉଠାଇ ଦୂତକୁ ପ୍ରହାର କରିବାକୁ ଯାଇ ଅଟକିଗଲା ଓ କହିଲା, "ସେ ରାଜକୁମାର ଅମିତସେନ ନୁହେଁ, ତା'ର ନାମ ଉଗ୍ରଦନ୍ତ । ସେ ମୋ ପୁଅ । ତମ ରାଜା ରାଣୀଙ୍କୁ ଯାଇ କୁହ, ମୋ ପୁଅ ପାଇଁ ସେମାନେ ଏତେ ଉତ୍କଣ୍ଠିତ ହେବାର ଆବଶ୍ୟକତା ନାହିଁ । ସାମନ୍ତ ରାଜା ସୁଦର୍ଶନ କିଏ, ସେକଥା ମୁଁ ଜାଣେନା । ତାଙ୍କ କନ୍ୟା ଚନ୍ଦ୍ରଲେଖା ମୋର ବୋହୂ ହେବାକୁ ଯୋଗ୍ୟ କି ନୁହେଁ, ସେକଥା ମୁଁ ବିଚାର କରିବି । ସେଥିରେ ଆଉ କାହାର କିଛି କହିବାର ଥାଇ ନ ପାରେ । ବାସ୍ । ଏଥର ତମେ ଯାଇପାର ।"

ଦୂତ ବୁଝିଲା କି ଉଗ୍ରାକ୍ଷ ସହିତ ଯୁକ୍ତିତର୍କ କରିବାକୁ ଯିବା ଅର୍ଥ ନିଜ ଜୀବନ ବିପନ୍ନ କରିବା । ସେ ଶଙ୍କି ଯାଇ ଦୂରେଇ ଠିଆ ହେଲା । ଉଗ୍ରାକ୍ଷ ନୌକା ଛାଡ଼ିବାକୁ ଆଦେଶ ଦେଲା । ସେମାନେ ପଶୁ ଛାଲରେ ତିଆରି ପାଲ୍ ଟାଙ୍ଗିଥାନ୍ତି । ଅନୁକୂଳ ପବନରେ ଭେଳା ଭଳି ନୌକା ସବୁ ଭାସିଗଲେ । ସବା ଆଗ ନୌକାରେ ଥାଏ ଦିଗ୍‌ଦର୍ଶକ ଶମ୍ଭୁକ । ରାକ୍ଷସମାନଙ୍କ ନୌକା ସବୁ ପୂର୍ବ ଦିଗକୁ ଯାଉଥାନ୍ତି । ଗୋଟିଏ ଦିନ ଓ ଗୋଟିଏ ରାତି ନିର୍ବିଘ୍ନରେ କଟିଗଲା । ନୌକା ଗୁଡ଼ିକ ବେଶ୍ କିଛି ଦୂର ଚାଲିଗଲେ ।

ତୃତୀୟ ଦିନ ସୂର୍ଯ୍ୟୋଦୟ ବେଳେ ଦୂରରେ ଅଗ୍ନି ଶିଖା ଦେଖାଗଲା । "ବହ୍ନି ଦ୍ୱୀପ! ବହ୍ନି ଦ୍ୱୀପ!" ବୋଲି ରାକ୍ଷସମାନେ ହୁରି କଲେ ।

ହଠାତ୍ ସେ ଦ୍ୱୀପ ଆଡୁ କିଛି ଗୋଟାଏ ଆକାଶରେ ସେମାନଙ୍କ ଆଡ଼କୁ ଆସୁଥିବାର ଦେଖାଗଲା । ପାଖକୁ ଆସିବାବେଳକୁ ବୁଝାଗଲା, ତାହା ଏକ ଭୟଙ୍କର ପକ୍ଷୀ । (କ୍ରମଶଃ)






## ଛନ୍ନ ପରୀକ୍ଷା

ନିଶା ଗରଜୁଥାଏ । ଭୁହାଲୁ ଭୁହା ବର୍ଷା ହେଉଥାଏ । ଶୀତଳ ପବନରେ ଗଛ-ଲତାମାନେ ଥରି ଯାଉଥାନ୍ତି । ଘଡ଼ଘଡ଼ ଓ ଶ୍ୱାନଶ୍ୱାପଦଙ୍କ ରଡ଼ିରେ ଶୁଭୁଥାଏ ଅଶରୀରୀ-ମାନଙ୍କ ଅଟ୍ଟହାସ୍ୟ । ଘନ ଘନ ବିଜୁଳି ଆଲୁଅରେ ଦିଶିଯାଉଥାଏ ଭୟାବହ ମୁହଁଟିମାନ ।

କିନ୍ତୁ ରାଜା ବିକ୍ରମାର୍କ ତିଳେ ମଧ୍ୟ ବିଚଳିତ ବୋଧ ନକରି ପୁନର୍ବାର ସେ ପ୍ରାଚୀନ ବୃକ୍ଷଟି ପାଖକୁ ଲେଉଟି ଆସିଲେ ଓ ବୃକ୍ଷାରୋହଣ କରି ଶବଟିକୁ ଉତାରି ଆଣିଲେ । ତେବେ ତା'ପରେ ତାକୁ କାନ୍ଧରେ ପକାଇ ସେହି ଶୂନ୍‌ଶାନ୍ ଶ୍ମଶାନ ପଥ ଅତିକ୍ରମ କରିବାକୁ ଆରମ୍ଭ କରିବା ମାତ୍ରେ ଶବସ୍ଥିତ ବେତାଳ କହିଲା, "ରାଜା, ତୁମେ ବର୍ତ୍ତମାନ ସୁଖ ନିଦ୍ରାରେ ଶାୟିତ ଥିବା କଥା । ରାତିରେ ଯଥେଷ୍ଟ ବିଶ୍ରାମ କଲେ ସିନା ଦିନବେଳେ

## ବେତାଳ କଥା



ରାଜ୍ୟଶାସନରେ ଯଥାର୍ଥ ମନୋନିବେଶ କରି ପାରିବ ! କିନ୍ତୁ ତୁମେ କାହା ପ୍ରରୋଚନାରେ ପଡ଼ି କେଜାଣି, ଏ ଦୁର୍ଯୋଗପୂର୍ଣ୍ଣ ରାତରେ ଭୀଷଣ ପରିଶ୍ରମ କରୁଛ ! ଅଯୋଗ୍ୟ ଲୋକଙ୍କ ସେବାରେ ବୁଦ୍ଧିମାନ ଓ ଧୀମାନ୍ ଲୋକେ ଅନେକ ସମୟରେ ବୃଥା ସମୟ ନଷ୍ଟ କରନ୍ତି । ଅବଶ୍ୟ କେହି କେହି ଠିକ୍ ସମୟରେ ଏ ବିଷୟରେ ଚେତି ଉଠି ନିଜକୁ ସୁଧାରି ନିଅନ୍ତି, କିନ୍ତୁ ସମସ୍ତେ ତ ଆଉ ଶେଖର ଭଳି ବିଜ୍ଞ ଓ ଚତୁର ନୁହନ୍ତି ! ହଁ, ଯେତେବେଳେ ଶେଖର ପ୍ରସଙ୍ଗ ଉତ୍‌ଥାପନ କଲିଣି, ସେତେବେଳେ ତା' କାହାଣୀ କହୁଛି, ମନଦେଇ ଶୁଣ । ଶୁଣିଲେ ଶ୍ରମଭାର ଲାଘବ ମନେ ହେବ ।"

ବେତାଳ କହିଲା : ଅନେକ ଦିନ ତଳର କଥା । ଲାବଣ୍ୟପୁର ଉପରେ ରାଜୁତି କରୁଥାନ୍ତି ରାଜା ଭ୍ରମରବର । ତାଙ୍କ ପୁଅ ଯୁବରାଜଙ୍କର ନାମ ଥିଲା ବୀରଭଦ୍ର, କିନ୍ତୁ ସେ ବୀର ନଥିଲେ କି ଭଦ୍ର ନଥିଲେ । ସେ କୌଣସି କାମରେ ସାହସର ବା ମହତ୍ତ୍ୱର ପରିଚୟ ଦେଇପାରୁ ନଥାନ୍ତି । ତେଣେ ରାଜପୁତ୍ର ବୋଲି ତାଙ୍କ ଗର୍ବ ଅହଙ୍କାର ବି କମ୍ ନଥାଏ । କଥାରେ କଥାରେ ସେ ଅନ୍ୟମାନଙ୍କୁ ଅସମ୍ମାନ ଓ ଅପମାନ କରୁଥାନ୍ତି ।

ଯୁବରାଜ ବୀରଭଦ୍ରଙ୍କ ଭାଗ୍ୟ, ତାଙ୍କର ମିତ୍ର ଥିଲେ ମନ୍ତ୍ରୀଙ୍କ ପୁଅ ଶେଖର । ପିଲାବେଳଠୁଁ ସେ ଦୁହେଁ ଏକା ସାଙ୍ଗରେ ଖେଳୁଥିଲେ, ପଢୁଥିଲେ ଓ ବଢ଼ୁଥିଲେ । ଶେଖର ବୀରଭଦ୍ରଙ୍କ ଦୁର୍ବଳତା ଓ ଅଯୋଗ୍ୟତା ଜାଣୁଥିଲେ, କିନ୍ତୁ ସେ ସର୍ବଦା ତାଙ୍କୁ ସହାୟତା କରୁଥିଲେ । ରାଜା ଭ୍ରମରବର ବି ମଧ୍ୟେ ମଧ୍ୟେ ଶେଖରଙ୍କୁ କହୁଥାନ୍ତି, "ଶେଖର, ମୋ ପୁଅ ଟିକିଏ ଖିଆଲି ମିଜାଜର ପିଲା । ତେଣୁ ତାକୁ ଜଗିବାର ଦାୟିତ୍ୱ ତମର ।"

ବାସ୍ତବିକ, ଯେତେ ପ୍ରକାରେ ସମ୍ଭବ ଶେଖର ବୀରଭଦ୍ରଙ୍କୁ ସୁପଥରେ ନେବାକୁ ଚେଷ୍ଟା କରୁଥାନ୍ତି । ତାଙ୍କ ଭିତରେ ଯେପରି ବୁଦ୍ଧି ଓ ବିବେକର ବିକାଶ ହେବ, ସେ ଦିଗରେ ସେ ତାଙ୍କୁ ପରାମର୍ଶ ଦେଉଥାନ୍ତି ।

ଦିନେ ନିକଟବର୍ତ୍ତୀ ଜ୍ୟୋତିପୁର ରାଜ୍ୟର ଜଣେ ଦୂତ ଆସି ରାଜା ଭ୍ରମରବରଙ୍କୁ ଭେଟିଲେ । ସେ ଦୂତ ଜ୍ୟୋତିପୁରର ରାଜକୁମାରୀ ଶାନ୍ତାଙ୍କ ପ୍ରତିକୃତି ଆଣିଥିଲେ । ସେ କହିଲେ ରାଜକୁମାରୀ ଶାନ୍ତା ବିବାହ ହେବା କଥା । ଯେ କୌଣସି ସମ୍ଭ୍ରାନ୍ତ କ୍ଷତ୍ରିୟ ଯୁବକ ତାଙ୍କ ପାଣିପ୍ରାର୍ଥୀ ହୋଇପାରନ୍ତି । କିନ୍ତୁ ତାଙ୍କୁ ତିନୋଟି ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବାକୁ ପଡ଼ିବ । ଉତ୍ତୀର୍ଣ୍ଣ ହେଲେ ଯାଇ ସେ ରାଜକୁମାରୀଙ୍କୁ ଭେଟି ପାରିବେ । ତେଣିକି ରାଜକୁମାରୀ ତାଙ୍କୁ ବାହା ହେବେ କି ନା ସ୍ଥିର କରିବେ ।"




ରାଜା ଭ୍ରମରବର ତ ନିଜ ପୁଅର ବୁଦ୍ଧି ବିଚକ୍ଷଣତା ବିଷୟ ଜାଣିଥିଲେ । ତେଣୁ ସେ ଏ ପ୍ରସ୍ତାବରେ କୌଣସି ଉତ୍ସାହ ଦେଖାଇଲେ ନାହିଁ । କିନ୍ତୁ ଯୁବରାଜ ବୀରଭଦ୍ର ସବୁ ଶୁଣିଲେ ଓ ରାଜକୁମାରୀଙ୍କ ପ୍ରତିକୃତି ବି ଦେଖିଲେ । ସେ ଶାନ୍ତାଙ୍କୁ ବିଭା ହେବାକୁ ଏତେ ଉତ୍ସୁକ ହେଲେ ଯେ ରାତିରେ ଶେଖରଙ୍କୁ ଡାକି ନିଜ ମନ କଥା କହି ତାଙ୍କ ସହ ଜ୍ୟୋତିପୁର ଯିବାକୁ ଅନୁରୋଧ କଲେ ।

"ଯୁବରାଜ, ଧୈର୍ଯ୍ୟ ଧର । ମହାରାଜା ଆଗେ ଆମକୁ କହନ୍ତୁ ।" ଶେଖର କହିଲେ ।

"ଶେଖର, ବାପା ଯଦି କିଛି କହିବାର ହୋଇଥାନ୍ତା, ତେବେ ସେ କହିସାରିଥାନ୍ତେ । ସେ କୌଣସି କାରଣରୁ ଏ ବିଷୟରେ ନୀରବ । ଚାଲ, ଆମେ ଦୁହେଁ ଚାଲିଯିବା ।" ଯୁବରାଜ ଜିଦ କରି କହିଲେ ।

"ଯୁବରାଜ, ଧର ରାଜକୁମାରୀ ଏଭଳି କୌଣସି କଠିନ ପରୀକ୍ଷା ରଖିବେ, ଯେଉଁଥିରେ ତମେ କୃତକାର୍ଯ୍ୟ ହେବ ନାହିଁ । ତା'ହେଲେ କେତେ ଅପମାନଜନକ ପରିସ୍ଥିତି ହେବ ବୁଝିପାରୁଛ ତ ?" ଶେଖର କହିଲେ ।

"ସେଥିପାଇଁ ତ ତମକୁ ସାଙ୍ଗରେ ନେଉଛି । ତମ ସାହାଯ୍ୟରେ ମୁଁ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଯିବି । ମୁଁ ତ ଆଉ ବୋକା ନୁହେଁ !"

ଶେଖର କୌଣସି ମତେ ବୀରଭଦ୍ରଙ୍କୁ ବୁଝାଇ ପାରିଲେ ନାହିଁ । ଅଗତ୍ୟା ସେ ତାଙ୍କ ସହ ଜ୍ୟୋତିପୁର ଗଲେ ।



ଦୁହେଁ ଜ୍ୟୋତିପୁର ପ୍ରାସାଦରେ ପହଞ୍ଚିବା ମାତ୍ରେ ରାଜାଙ୍କ ତରଫରୁ ସେମାନଙ୍କୁ ଉପଯୁକ୍ତ ସମ୍ମାନ ଦିଆଗଲା ଓ ରାଜାଙ୍କ ବିଶେଷ ଅତିଥି-ଭବନରେ ରହିବାର ବ୍ୟବସ୍ଥା କରାଗଲା ।

ରାଜକୁମାରୀ କିଭଳି ତିନୋଟି ପରୀକ୍ଷା ରଖିଥିଲେ, ସେ ବିଷୟ ଗୋପନ ନଥିଲା । ପ୍ରାର୍ଥୀଙ୍କୁ ପ୍ରଥମେ ଗୋଟିଏ ସର୍ପମୟ କୋଠରୀ ଭିତର ଦେଇ ଯିବାକୁ ପଡ଼ିବ । ଦ୍ୱିତୀୟ କୋଠରୀରେ ସମାନ ବେଶଭୂଷା ହୋଇ ଜଣେ ପଣ୍ଡିତ ଓ ଜଣେ ଗଜମୂର୍ଖ ଏକା ଆସନରେ ବସିଥିବେ । ପ୍ରାର୍ଥୀଙ୍କୁ ଠିକ୍ ଠିକ୍ କହିଦେବାକୁ ହେବ କିଏ ପଣ୍ଡିତ କିଏ ମୂର୍ଖ । ସେଥିରୁ ଉତ୍ତୀର୍ଣ୍ଣ ହେଲେ ତୃତୀୟ କୋଠରୀ ଭିତରେ ଗୋଟିଏ ଚିତ୍ରପଟ ଦେଖିବାକୁ ମିଳିବ । ସେ ଚିତ୍ରରେ ଜଣେ ଲୋକ ଗୋଟିଏ ଘୋଡ଼ା ଚଢ଼ି ଏକ ଘୂର୍ଣ୍ଣାୟମାନ ଚକ୍ର ଅତିକ୍ରମ କରିବାର ଦେଖାଇ ଦିଆ ହୋଇଛି । ଘୋଡ଼ାଟିର ଅଧା ଧଳା ଓ ଅଧା କଳା । ସେ ଚିତ୍ରର ଅର୍ଥ କହିପାରିଲେ ରାଜକନ୍ୟାଙ୍କ ସହ ସାକ୍ଷାତ୍ ।

ଦୁଇଦିନ ଧରି ଶେଖର ବୀରଭଦ୍ରଙ୍କୁ ଯାହା କରିବାର ଏବଂ ଯାହା କହିବାର କଥା, ସେସବୁ ଶିଖାଇଲେ ।

ପ୍ରଥମେ ବୀରଭଦ୍ର ସର୍ପ-ସଙ୍କୁଳ କୋଠରୀ ଭିତରେ ପଶିଲେ । ସେ ଅବଶ୍ୟ ଶଙ୍କିଗଲେ । ତେବେ ଶେଖର ତାଙ୍କୁ ବୁଝାଇ କହିଥିଲେ, ସେସବୁ କଦାପି ସତ ସାପ ନୁହନ୍ତି । କାରଣ ବିଷଧର ସାପ ଦ୍ୱାରା ପ୍ରାର୍ଥୀଙ୍କୁ ପ୍ରଥମରୁ ହତ୍ୟା କରି ରାଜକୁମାରୀଙ୍କର କୌଣସି ଲାଭ ହୋଇ ପାରେନା । ଅତଏବ ନିର୍ଭୟରେ ବୀରଭଦ୍ର ସେ କୋଠରୀ ଅତିକ୍ରମ କରିବା ଠିକ୍ ହେବ ।

ବୀରଭଦ୍ର କୌଣସି ମତେ କୋଠରୀ ଅତିକ୍ରମ କରିଯିବା ମାତ୍ରେ ରାଜକୁମାରୀଙ୍କର ଜଣେ ସଖୀ ତାଙ୍କୁ ଅଭିବାଦନ ଜଣାଇ ପଚାରିଲା, "ସାପମାନେ ଆପଣଙ୍କର କିଛି ହାନି କରି ନାହାନ୍ତି ତ ?"

"ମୁଁ ବାଘ ସିଂହଙ୍କୁ ଡରିବାବାଲା ନୁହେଁ । ସାପଙ୍କ ଡରିବି ?" ବୀରଭଦ୍ର ଉତ୍ତର ଦେଲେ । ଅବଶ୍ୟ ଶେଖର ତାଙ୍କୁ ଏଭଳି ଉତ୍ତର ଶିଖାଇ ନଥିଲେ ।

ତା'ପରେ ତାଙ୍କୁ ପରବର୍ତ୍ତୀ କୋଠରୀ ଭିତରକୁ ନିଆଗଲା । ସେଠାରେ ବସିଥିବା ଦୁଇଜଣଯାକ ବ୍ୟକ୍ତି ବେଶଭୂଷାରେ ସମାନ ଦିଶୁଥିଲେ । ବୀରଭଦ୍ର କଡ଼ା ସ୍ୱରରେ କହିଲେ, "ପଣ୍ଡିତ ହୋଇ ଖାସ୍ ରାଜକୁମାରୀଙ୍କଠୁଁ ପଇସା ପାଇବା ଲୋଭରେ ଗୋଟାଏ ମୂର୍ଖ ସହ ଏକା ଆସନରେ ବସିବାକୁ ଲଜ୍ଜା ଲାଗୁନାହିଁ ?"

ତାଙ୍କର ଏ ଧମକ ଶୁଣିବା ମାତ୍ରେ ଦୁଇଜଣଙ୍କ ଭିତରୁ ଜଣଙ୍କ ମୁହଁ ଶେତା ପଡ଼ିଗଲା । ବୀରଭଦ୍ର ସଙ୍ଗେ ସଙ୍ଗେ ରାଜକୁମାରୀଙ୍କ ସଖୀଙ୍କୁ କହିଲେ, "ଏଇ ଲୋକଟି ପଣ୍ଡିତ !"

ସଖୀ ତାଙ୍କୁ ପୁନର୍ବାର ଅଭିନନ୍ଦନ ଜଣାଇ ତୃତୀୟ କୋଠରୀକୁ ବାଟ ଦେଖାଇ ଦେଲେ । ବୀରଭଦ୍ର ସେ କୋଠରୀରେ ପଶି ଚିତ୍ର ଆଡ଼େ କିଛି ସମୟ ଅନାଇଲେ ଓ ସେଠାରେ ଉପସ୍ଥିତ ପ୍ରହରୀକୁ କହିଲେ, "ଏ ଚିତ୍ର ହେଲା କାଳ ଚକ୍ର । ଘୋଡ଼ା ଦେହର କଳା ଓ ଧଳା ରଙ୍ଗ ଦୁଃଖ ଓ ସୁଖର ପ୍ରତୀକ । ଘୋଡ଼ା ହେଲା ଜୀବନ । ଯେଉଁ ଲୋକ ସୁଖ ଦୁଃଖ ଭରା ଜୀବନ-ଅଶ୍ୱକୁ ନିଜ ଆୟତ୍ତରେ ରଖି କାଳ ଚକ୍ର ଭେଦ କରିବାକୁ ସକ୍ଷମ, ସେହି ହେଲେ ଆଦର୍ଶ ।"

ପ୍ରହରୀ ତାଙ୍କୁ ଅଭିବାଦନ ଜଣାଇ ରାଜକୁମାରୀ ବସିଥିବା କକ୍ଷ ଆଡ଼େ ଅଙ୍ଗୁଳି ନିର୍ଦ୍ଦେଶ କଲା । ଏହା ଭିତରେ ବୀରଭଦ୍ର



କପଟ ନକଲ ସାପଥିବା କୋଠରୀରେ ପଶି ଉପସ୍ଥିତ ହୋଇଯାଇଥିଲେ, ସେକଥା ଜଣେ ଚର ଆସି ରାଜକୁମାରୀଙ୍କୁ କହିଦେଇଥିଲା । ବୀରଭଦ୍ରଙ୍କ ସାଥିରେ ଜଣେ ବିଚକ୍ଷଣ ଯୁବକ ଥାଇ ତାଙ୍କୁ ସର୍ବଦା ପରାମର୍ଶ ଦେବା କଥା ମଧ୍ୟ ରାଜକୁମାରୀ ଶୁଣିଥିଲେ । ବୀରଭଦ୍ରଙ୍କୁ ଦେଖି ତାଙ୍କର ମନେ ହେଲା ରାଜକୁମାର ବାସ୍ତବିକ ଅଶ୍ୱାରୋହୀ ଚିତ୍ରର ବ୍ୟାଖ୍ୟା କଲାଭଳି ବୁଦ୍ଧିମାନ ନୁହନ୍ତି ।

ରାଜକୁମାରୀ କହିଲେ, "ରାଜକୁମାର ! ଆପଣ ତିନୋଟି ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଛନ୍ତି । ସେଥିପାଇଁ ଅଭିନନ୍ଦନ । କିନ୍ତୁ ନିଜ ବୁଦ୍ଧିରେହିଁ ଆପଣ ଏହା କରିପାରିଛନ୍ତି,



ଏତିକ ପ୍ରମାଣ ଦେବା ଆବଶ୍ୟକ। ତେଣୁ ଆପଣଙ୍କୁ ପୁଣି ଏକ ପରୀକ୍ଷା ଦେବାକୁ ହେବ।"

ବୀରଭଦ୍ର କ୍ରୋଧ ସମ୍ବରଣ କରି ନପାରି ଚିତ୍କାର କରି କହିଲେ, "ପୁଣି ପରୀକ୍ଷା? ମୋ ବୁଦ୍ଧି ଉପରେ ଅବିଶ୍ୱାସ? ମୋଠୁଁ ବୁଦ୍ଧିମାନ ଆଉ କିଏ?"

"ଆପଣଙ୍କ ସାଥିରେ ଥିବା ଯୁବକ ହୁଏତ ଆପଣଙ୍କଠୁଁ ଅଧିକ ବୁଦ୍ଧିମାନ ହୋଇଥିବେ!" ରାଜକୁମାରୀ କହିଲେ।

"ଚୋପ୍! ମୁଁ ତମ ରାଜ୍ୟ ଜୟ କରି ତମକୁ ଧରି ନେଇଯିବି!" ଧମକ ଦେଲେ ବୀରଭଦ୍ର।

ରାଜକୁମାରୀ ହସିଲେ ଓ କହିଲେ, "ବେଶ, ଏଥର ଆପଣଙ୍କ ଚରିତ ଜଣା ପଡ଼ିଗଲା। ଆପଣ ଯାଇ ପାରନ୍ତି। ଆପଣଙ୍କ ବନ୍ଧୁଙ୍କୁ ପଠାଇ ଦିଅନ୍ତୁ।"

ବୀରଭଦ୍ର ରାଗ ତମତମ ହୋଇ ଚାଲିଗଲେ। ଅତିଥି ଭବନରେ ଶେଖର ଉତ୍କଣ୍ଠିତ ଭାବରେ ତାଙ୍କୁ ଅପେକ୍ଷା କରିଥିଲେ। ସେ ଯାଇ ଶେଖରଙ୍କୁ ସବୁ କହିଲେ। ଶେଖର କହିଲେ, "ରାଜକୁମାରୀ ମୋତେ ଭେଟିବାକୁ ଚାହୁଁଥିବା ସ୍ଥଳେ ତାଙ୍କୁ ଦେଖା ନକରି ଚାଲିଯିବା ଅସୌଜନ୍ୟ ହେବ।"

"ତାଙ୍କୁ ଦେଖା କର ଓ ମୋତେ ବିଦା ହେବା ପାଇଁ କୁହ।" ବୀରଭଦ୍ର କହିଲେ।

"ମୁଁ କହିଲେ ଯଦି ସେ ରାଜି ହୋଇ ଯାଆନ୍ତେ, ତେବେ ଏତେ ପରୀକ୍ଷା ରଖି ନଥାନ୍ତେ।" ଏହା କହି ଶେଖର ରାଜକୁମାରୀଙ୍କୁ ଭେଟିଲେ।

ରାଜକୁମାରୀ ଶେଖରଙ୍କ ସହ କଥାବାର୍ତ୍ତା କରି ବୁଝିଲେ ତାଙ୍କ ଅନୁମାନ ଠିକ୍। ଶେଖର ଅସାଧାରଣ ବୁଦ୍ଧିମାନ, ଭଦ୍ର ଓ ସାହସୀ। ରାଜକୁମାରୀ କହିଲେ, "ପ୍ରକୃତରେ ଆପଣହିଁ ପରୀକ୍ଷାରେ ବିଜୟୀ ହୋଇଛନ୍ତି। ତେଣୁ ଆପଣ ବିଜୟୀର ପ୍ରାପ୍ୟ ନପାଇବେ କାହିଁକି?"

ଶେଖର ନମ୍ର ଭାବରେ କହିଲେ, "ରାଜକୁମାରୀ, ଯିଏ ପ୍ରତିଯୋଗିତାରେ ପ୍ରାର୍ଥୀ ରୂପେ ଭାଗ ନେଇଛି, ତାକୁ ଯିନା ବିଜୟୀ ଅଥବା

ପରିଚିତ ବୋଲି କୁହାଯିବ, ଯିଏ ପଛଭୂମିରେ ରହି ପ୍ରଶ୍ନ ସବୁର ଉତ୍ତର ମାତ୍ର କଳ୍ପନା କରିଛି, ସେ କପରି 'ପ୍ରାର୍ଥୀ ରୂପେ ପରିଗଣିତ ହେବ ? ମୁଁ ଆସିଛି ରାଜପୁତ୍ରଙ୍କ ଶୁଭେଚ୍ଛୁ ରୂପେ ।"

ରାଜକୁମାରୀ ରହସ୍ୟମୟ ହସ ହସି କହିଲେ, "ଯୁବକ! ରାଜକୁମାରଙ୍କ ପ୍ରତି ଶୁଭେଚ୍ଛାହିଁ ସବୁ; ରାଜ୍ୟ ପ୍ରତି ଶୁଭେଚ୍ଛାର ମୂଲ୍ୟ ନାହିଁ ?"

ଶେଖର ସ୍ତବ୍ଧ ହୋଇ ରହିଲେ ଓ ତା'ପରେ ଅଭିବାଦନ ଜଣାଇ ବାହାରିଗଲେ ।

ବୀରଭଦ୍ରଙ୍କ ସହ ସେ ଲବଣ୍ୟପୁର ଫେରିଗଲେ । ରାଜା ଭ୍ରମରବର ନିଜ ପୁଅର ଅପମାନ କଥା ଶୁଣି ଗମ୍ଭୀର ହୋଇ ରହିଲେ । ତା'ପରେ ଶେଖରଙ୍କୁ କହିଲେ, "ଶେଖର! ଆଗାମୀ କାଲି ମୁଁ ଗୋଟିଏ ସ୍ଥାନକୁ ଯିବି । ଗୋପନୀୟ କାର୍ଯ୍ୟ । ତମେ ମୋ ସହ ଯିବ ।"



ପରଦିନ ଶେଖରଙ୍କୁ ନେଇ ରାଜା ବଣ ଭିତରକୁ ଗଲେ । ହଠାତ୍ ନିର୍ଜନ ସ୍ଥାନରେ ସେ ତରବାରି ବାହାର କରି ଶେଖରଙ୍କ ଆଡ଼େ ଉଦ୍ୟତ କଲେ । ଶେଖର ସତେ ଅବା ସେଭଳି ଆଶଙ୍କା କରୁଥିଲେ । ସେ ରାଜାଙ୍କ ହାତ ଧରି ପକାଇଲେ । ରାଜା ଭାରସାମ୍ୟ ରକ୍ଷା ନକରି ପାରି ତଳେ ପଡିଗଲେ ।

"ମହାରାଜ! ଯୁବରାଜଙ୍କ ଅପମାନ ପାଇଁ ତାଙ୍କ ନିଜ ଔଦ୍ଧତ୍ୟ ଓ ରାଜକୁମାରୀ ଶାନ୍ତାଙ୍କ ତୀକ୍ଷ୍ଣ ବୁଦ୍ଧି ଦାୟୀ । ମୁଁ ନୁହେଁ ।" ଏହା କହି ଶେଖର ଘୋଡ଼ା ଛୁଟାଇ ଜ୍ୟୋତପୁର ଚାଲିଗଲେ ଓ ରାଜକୁମାରୀଙ୍କୁ ସାକ୍ଷାତ୍ କରି ସବୁ କହିଲେ ।

ରାଜକୁମାରୀ ତାଙ୍କୁ ସ୍ୱାଗତ ଜଣାଇଲେ ଓ ତାଙ୍କୁ ବିଦା ଦେଲେ । ଏହା ପରେ ପରେ ଜ୍ୟୋତପୁରର ସୈନ୍ୟଦଳ ଧରି ଶେଖର ଆସି କଲ୍ୟାଣପୁର ଆକ୍ରମଣ କଲେ ଓ ଅକ୍ଲେଶରେ ରାଜା ଭ୍ରମରବରଙ୍କୁ ପରାଜିତ କରି ରାଜ୍ୟ ଅଧିକାର କରିନେଲେ ।

ବେତାଳ ଟିକିଏ ନୀରବ ରହି ତା'ପରେ ତୀବ୍ର କଣ୍ଠରେ ପ୍ରଶ୍ନ କଲା, "ରାଜା! ମୋର କେତୋଟି ସନ୍ଦେହ ରହିଛି । ଶେଖର ହଠାତ୍ ତା'ର ପୃଷ୍ଠପୋଷକଙ୍କ ରାଜ୍ୟ ଅଧିକାର କରିନେଇ ନିଜକୁ ବିଶ୍ୱାସଘାତକ ବୋଲି

ପ୍ରମାଣ କଲନାହିଁ କି ? ଦ୍ୱିତୀୟରେ ରାଜକୁମାରୀ ଶାନ୍ତା ରହସ୍ୟମୟ ହସ ହସି ସେ ଖାଲି ରାଜକୁମାରଙ୍କ ଶୁଭେଚ୍ଛୁ, ରାଜ୍ୟର ଶୁଭେଚ୍ଛୁ ନୁହେଁ ବୋଲି ମନ୍ତବ୍ୟ ଦେବାର ତାତ୍ପର୍ଯ୍ୟ କ'ଣ ? ରାଜା! ପାରିଲେ ମୋ ପ୍ରଶ୍ନର ଉତ୍ତର ଦିଅ । ଉତ୍ତର ଦେବାର ଶକ୍ତି ଥିବା ସତ୍ତ୍ୱେ ଯଦି ନୀରବ ରହିବ, ତେବେ ତୁମ ଶିର ହେବ ସ୍କନ୍ଧଚ୍ୟୁତ ।"

ମୁହୂର୍ତ୍ତେ ମଧ୍ୟ ବିଳମ୍ବ ନକରି ରାଜା ବିକ୍ରମାର୍କ ଉତ୍ତର ଦେଲେ, "ବିଶ୍ୱାସ ଘାତକତା ଶେଖର କରି ନଥିଲେ, କଲେ ରାଜା ଭ୍ରମରବର । ନିଜ ପୁଅର ଅପମାନରେ ଓ ରାଜକୁମାରୀ ଶେଖରଙ୍କୁ ବିଭା ହେବାକୁ ମନ ବଳାଇଥିବାର ଶୁଣି ସେ ଶେଖର ପ୍ରତି ହଠାତ୍ ଈର୍ଷ୍ୟାନ୍ୱିତ ହେଲେ ଓ ଶେଖରଙ୍କୁ ହତ୍ୟା କରିବାକୁ ଚେଷ୍ଟା କଲେ । ଶେଖର ନିଜର ବୁଦ୍ଧି ଓ ସତର୍କତା ଯୋଗୁଁ ବଞ୍ଚିଗଲା ସିନା, କିନ୍ତୁ ସେ ନିହତ ବି ହୋଇପାରିଥାନ୍ତା । ଏହାପରେ ତା'ର ରାଜାଙ୍କ ପ୍ରତି ସଦିଚ୍ଛା ରଖିବାର ପ୍ରଶ୍ନ ନଥିଲା । ଯାହାଙ୍କ ପୁଅର ମାନ ରକ୍ଷା ପାଇଁ ସେ ସର୍ବଦା ସଚେଷ୍ଟ ଥିଲା, ସେ ତାକୁ ବିନା ଦୋଷରେ ହତ୍ୟା କରିବାକୁ ଯାଉଥିଲେ । ସେ ବି କ୍ଷତ୍ରିୟ ଯୁବକ । ତେଣୁ ସେ ପ୍ରତିଶୋଧ ନେଲା ।

"ରାଜକୁମାରୀ ତାକୁ ଯାହା କହିଥିଲେ, ତା'ର ମର୍ମ ହେଲା, ସେ ରାଜକୁମାରଙ୍କ ପାଇଁ ଶୁଭେଚ୍ଛା ପୋଷଣ କରୁଛି, କିନ୍ତୁ ଏଭଳି ଉଦ୍ଧତ ରାଜକୁମାର ଯେତେବେଳେ ରାଜା ହେବେ, ସେତେବେଳେ ରାଜ୍ୟର ଅବସ୍ଥା କ'ଣ ହେବ ? ପ୍ରଜାମାନଙ୍କ ସ୍ୱାର୍ଥ କଥା ସେ କେବେ ଚିନ୍ତା କରିଛୁ କି ? ରାଜକୁମାରୀଙ୍କ ଏହି ଇଙ୍ଗିତହିଁ କଲ୍ୟାଣପୁର ଅଧିକାର କରିନେବାକୁ ଶେଖରଙ୍କୁ ପ୍ରେରଣା ଯୋଗାଇଲା ।"

ରାଜାଙ୍କ ଉତ୍ତର ଦାନ ଶେଷ ହେବା ମାତ୍ରେ ଶବ ସହ ଶବସ୍ଥିତ ବେତାଳ ତାଙ୍କ କାନ୍ଧରୁ ଖସିଯାଇ ପୁନର୍ବାର ସେ ବୃକ୍ଷ ଡାଳରେ ଝୁଲି ପଡ଼ିଲା ।

(କଳ୍ପିତ)



"ଜହ୍ନମାମୁଁ"ର ସାନନ୍ଦ ନିମନ୍ତ୍ରଣ

# ମହାନ
# ଭାରତୀୟ ଐତିହ୍ୟ
# ଉପରେ ପ୍ରଶ୍ନ

## ଛଅ ପର୍ଯ୍ୟାୟରେ

**ପ୍ରତିଯୋଗିତା—୧**

ଭାରତର ବିଖ୍ୟାତ ନରପତି ବୃନ୍ଦ



**ପ୍ରତିଯୋଗିତା—୨**

ଭାରତର ବିଖ୍ୟାତ ସ୍ୱାମୀ ବୃନ୍ଦ



**ପ୍ରତିଯୋଗିତା—୩**

ଭାରତର ବିଖ୍ୟାତ ଯୁଗ



**୧,୩୦,୦୦୦ ଟଙ୍କା ମୂଲ୍ୟର ଉର୍ଦ୍ଧ୍ୱ ପୁରସ୍କାର ବଣ୍ଟିତ ହେବ !**

୧୧ ଟି ଭାଷାରେ ପ୍ରତିଯୋଗିତା ପାଇଁ ଅଲଗା ଅଲଗା ପୁରସ୍କାର

୧୧ଟି ପ୍ରଥମ ପୁରସ୍କାର : ୨୦୦୦ ଟଙ୍କାର ବୃତ୍ତି
୧୧ଟି ଦ୍ୱିତୀୟ ପୁରସ୍କାର : ୧୦୦୦ ଟଙ୍କାର ବୃତ୍ତି
୧୧ଟି ତୃତୀୟ ପୁରସ୍କାର : ୫୦୦ ଟଙ୍କାର ବୃତ୍ତି

**ଏହାଛଡ଼ା ବିଶିଷ୍ଟ ପୁରସ୍କାର**

୧ମ ବିଶିଷ୍ଟ ପୁରସ୍କାର: ୧୦,୦୦୦ ଟଙ୍କାର ବୃତ୍ତି
୨ୟ ବିଶିଷ୍ଟ ପୁରସ୍କାର: ୫୦୦୦ ଟଙ୍କାର ବୃତ୍ତି
୩ୟ ବିଶିଷ୍ଟ ପୁରସ୍କାର: ୨୫୦୦ ଟଙ୍କାର ବୃତ୍ତି
*ଗୋଷ୍ଠବର୍ଷରେ ପାଞ୍ଚଟି ସମାନ ଭିତ୍ତିରେ ପ୍ରଦତ୍ତ ହେବ
ଆହୁରି ମଧ୍ୟ ୨୨୦ଟି ସାନ୍ତ୍ୱନା ପୁରସ୍କାର— ବର୍ଷକ ପାଇଁ 'ଜହ୍ନମାମୁଁ'ର ଗ୍ରାହକଙ୍କୁ !

## ପ୍ରତିଯୋଗିତାରେ କିପରି ଭାଗ ନେବ

ଭାରତ ଇତିହାସ ବର୍ଷ, ସୁତରାଂ ଜହ୍ନମାମୁଁ ସବୁ ପରିବାରର ସମସ୍ତଙ୍କୁ ନେଇ କରିପାର । ଏଠାରେ ଭାରତର ସ୍ୱାଧୀନତା ଓ ଇତିହାସର ପ୍ରଖ୍ୟାତ ଯୋଦ୍ଧାମାନଙ୍କ ଛବି ଦିଆଯାଉଛି । ସେମାନଙ୍କୁ ଚିହ୍ନିବା ପାଇଁ ପ୍ରତ୍ୟେକଙ୍କ ସଙ୍କେତ ଦିଆଯାଇଛି । ସେ ସଙ୍କେତ ଅନୁସନ୍ଧାନ କରି ନିର୍ଦ୍ଦିଷ୍ଟ ଚତୁଷ୍କୋଣରେ ଠିକ ସଂଖ୍ୟାଗୁଡ଼ିକ ଲେଖିଦିଅ । ଉପରେ ଥିବା ଯୋଦ୍ଧାଙ୍କ ଭିତରୁ ଗୋଟିଏ ଯୋଡ଼ି ବାଛି ନିଅ । ଏହି ଦୁଇଟିରେ ଥିବା ବାକ୍ୟର ଅପୂର୍ଣ୍ଣ ଅଂଶକୁ ଖାଲିଥିବା ସ୍ଥାନରେ ପୂରଣ କର । ପଚାଶରୁ ଅଧିକ ଶବ୍ଦ ବ୍ୟବହାର କରିବ ନାହିଁ । ନିଜ ଉତ୍ତର ସେତେବେଳେ ଖୁସି ହେବ! ବାଛିଥିବା ସବୁଠୁଁ ଭଲ ଉତ୍ତର ପାଇଁ ପୁରସ୍କାର ମିଳିବ ।
ତୁମ ନାମ, ଠିକଣା ଓ ବୟସ ନିର୍ଦ୍ଦିଷ୍ଟ ସ୍ଥାନରେ ଲେଖି ଦୁଇଟି କାଟି ଆମ ପାଖକୁ ଡାକରେ ପଠାଅ ।
ଏଥର ଫଳ ଘୋଷଣା ହେବା ପୂର୍ବରୁ ତୃତୀୟ ପ୍ରତିଯୋଗିତାର ଘୋଷଣା ପାଇଁ 'ଜହ୍ନମାମୁଁ'ର ପରବର୍ତ୍ତୀ ସଂଖ୍ୟାକୁ ଅପେକ୍ଷା କର ।

## ନିୟମାବଳୀ

୧. ୧୬ ବର୍ଷରୁ କମ ବୟସ୍କ ସମସ୍ତ ବାଳକବାଳିକାଙ୍କ ପାଇଁ ଏ ପ୍ରତିଯୋଗିତା ଉଦ୍ଦିଷ୍ଟ । ଜଣେ ଯେତେ ସଂଖ୍ୟାରେ ଇଚ୍ଛା ସେତେ ସଂଖ୍ୟାରେ ଫର୍ମ ପୂରଣ କରିପାରିବେ—କିନ୍ତୁ 'ଜହ୍ନମାମୁଁ'ରେ ଥିବା ଫର୍ମ ହେବା ଦରକାର ।

୨. ଜଣେ ଗୋଟିଏ ବା ଏକାଧିକ ପର୍ଯ୍ୟାୟର (ଭାରତର ଖ୍ୟାତ ନରପତି, ଖ୍ୟାତ ରାଣୀ ଓ ଖ୍ୟାତ ଯୋଦ୍ଧା) ପ୍ରତିଯୋଗିତାରେ ଭାଗ ନେଇପାରେ । ଜଣେ ପ୍ରତିଟିରେ ବି ୧ମ ପୁରସ୍କାର ପାଇବାକୁ ହକଦାର ସେ ବିଶେଷ ପ୍ରତିଯୋଗିତାରେ ମଧ୍ୟ ଭାଗ ନେଇପାରେ ।

୩. [illegible] ଭିତରେ ଫର୍ମ ପୂରଣ ହେବା ଲୋଡ଼ା । 'ଜହ୍ନମାମୁଁ' ପ୍ରକାଶ ପାଉଥିବା ୧୧ ଟିରୁ ଯେ କୌଣସି ଭାଷାରେ ।

୪. ତୃତୀୟ ପ୍ରତିଯୋଗିତା ପାଇଁ ପ୍ରବେଶିକା ଫର୍ମ ୩୧ ତାରିଖ ଡିସେମ୍ବର ୧୯୮୭ ପୂର୍ବରୁ ଆମ ପାଖରେ ପହଞ୍ଚିବା ଦରକାର ।

୫. ପ୍ରବେଶିକା ଫର୍ମର ପହଞ୍ଚିବାରେ ବିଳମ୍ବ ବା ବାଟରେ ହଜିଯିବା ଅଥବା ଭୁଲିଯିବା ପାଇଁ ସଙ୍ଗଠନ ଦାୟୀ ନୁହେଁ ।

୬. ପ୍ରବେଶିକା ଫର୍ମ ସାଧାରଣ ଡାକରେ ଆସିବା ଦରକାର ।

୭. କେବଳ ଚନ୍ଦାମାମା ପବ୍ଲିକେସନ୍ସ ଓ ପ୍ରସାଦ ପ୍ରୋସେସ୍ ଏସୋସିଏଟ୍ସର କର୍ମଚାରୀବୃନ୍ଦ ଓ ସେମାନଙ୍କ ପରିବାରବର୍ଗଙ୍କୁ ଛାଡ଼ି ଭାରତର ଯେ କୌଣସି ନାଗରିକ ଏଥିରେ ଅଂଶ ଗ୍ରହଣ କରିପାରିବେ ।

୮. ପ୍ରବେଶିକା ଫର୍ମ ସବୁ ଗୋଟିଏ ନିରପେକ୍ଷ ବିଚାରକମଣ୍ଡଳ ବିଚାର କରିବେ । ସେମାନଙ୍କ ସିଦ୍ଧାନ୍ତ ଚୂଡ଼ାନ୍ତ ପରିଗଣିତ ହେବ ।

୯. ବିଜେତାମାନଙ୍କ ନାମ 'ଜହ୍ନମାମୁଁ'ରେ ପ୍ରକାଶ ପାଇବା ସଙ୍ଗେ ସଙ୍ଗେ ସେମାନଙ୍କୁ ଡାକ ଯୋଗେ ମଧ୍ୟ ଜଣାଇ ଦିଆଯିବ ।

**ବିଶିଷ୍ଟ ପ୍ରତିଯୋଗିତା ପାଇଁ ବିଶେଷ ଘୋଷଣା**

ପ୍ରବେଶିକା ଫର୍ମ ଡାକରେ ପଠାଇବା ପୂର୍ବରୁ ସେଥିରୁ "ଜହ୍ନମାମୁଁ ପ୍ରତିଯୋଗିତା-୩" ଲେଖାଥିବା ଲେବେଲ ଖଣ୍ଡିକ କାଟି ରଖ । ୧ମ ଓ ୨ୟ ପ୍ରତିଯୋଗିତା ପାଇଁ ମଧ୍ୟ ତାହାହିଁ କର । ଡିସେମ୍ବର ସଂଖ୍ୟାରେ ବିଶିଷ୍ଟ ପ୍ରତିଯୋଗିତା ପ୍ରବେଶିକା ଫର୍ମ ଦେଖିବ । ଏ ତିନୋଟିଯାକ ଲେବେଲ ସେ ଫର୍ମ ଉପରେ ଲଗାଇବାକୁ ହେବ । ତେବେ ଯାଇ ବିଶିଷ୍ଟ ପ୍ରତିଯୋଗିତାରେ ଜଣେ ଭାଗ ନେଇ ପାରିବ ।

**ଏ 'ଜହ୍ନମାମୁଁ' ଖଣ୍ଡିକ ସାଇତି ରଖ । ବିଶିଷ୍ଟ ପ୍ରତିଯୋଗିତା ସଂକ୍ରାନ୍ତ ପ୍ରଶ୍ନମାନ ସେପ୍ଟେମ୍ବର, ଅକ୍ଟୋବର ଓ ନଭେମ୍ବର ସଂଖ୍ୟା ଜହ୍ନମାମୁଁ ଉପରେ ଆଧାରିତ ହେବ ।**

ତୁମେ ୧ମ ଓ ୨ୟ ପ୍ରତିଯୋଗିତାରେ ଭାଗ ନେଇ ନଥିଲେ ମଧ୍ୟ ଏ ୩ୟ ପ୍ରତିଯୋଗିତାରେ ଭାଗ ନେଇ ପାରିବ ।

# ପ୍ରତିଯୋଗିତା ୩

## (ପ୍ରବେଶିକା ଫର୍ମ)







ନମୁନା ଅବଲମ୍ବନ କରି ଏ ଛଅ ଯୋଡି ଛବି ସହ ନାମର ଯୋଗାଯୋଗ କରି ଛବିରେ ଥିବା ଖାଲି ସ୍ଥାନରେ ଠିକ ନମ୍ବରଟି ଲେଖ ।

| | | | | | |
|---|---|---|---|---|---|
| ଲବ ଓ କୁଶ | ୧ | ସତ୍ୟବାନ ଓ ସାବିତ୍ରୀ | ୪ | ଶକୁନ୍ତଳା ଓ ଦୁଷ୍ମନ୍ତ | ୭ |
| ରାଧା ଓ କୃଷ୍ଣ | ୨ | ଆକବର ଓ ବୀରବଲ | ୫ | ରାମ ଓ ଲକ୍ଷ୍ମଣ | ୮ |
| ରାଣା ପ୍ରତାପ ଓ ଚେତକ | ୩ | ନଳ ଓ ଦମୟନ୍ତୀ | ୬ | ବିଷ୍ଣୁ ଓ ଗରୁଡ | ୯ |







ଏ ଲେବେଲ୍ ଖଣ୍ଡିକ ବିଶିଷ୍ଟ ପ୍ରତିଯୋଗିତା ପାଇଁ ରଖ
ଯେତେବେଳେ ବିଶିଷ୍ଟ ପୁରସ୍କାର ପାଇଁ ଉଦ୍ୟମ କରିବ (ଡିସେମ୍ବର ସଂଖ୍ୟା
ଦେଖିବା ପରେ) ସେତେବେଳେ ଏ ଲେବେଲ୍ ଖଣ୍ଡିକ ପ୍ରତିଯୋଗିତା
ଫର୍ମ ଉପରେ ଲଗାଇବାକୁ ହେବ ।

ଚନ୍ଦମାମୁ ପ୍ରତିଯୋଗିତା

୩

## ପ୍ରତିଯୋଗିତା ୩ (ପ୍ରବେଶିକା ଫର୍ମ)

ବର୍ତ୍ତମାନ ଉପରୋକ୍ତ ଦୃଶ୍ୟରେ ଥିବା ଛଅଟି ଛବିରୁ ଯେ କୌଣସି ଏକ ଯୋଡ଼ି ବାଛି ନିଅ ଏବଂ ନିମ୍ନୋକ୍ତ ବାକ୍ୟଟି ପୂର୍ଣ୍ଣ କର। "କାରଣ" ଶବ୍ଦ ପରେ ପନ୍ଦରରୁ ଅଧିକ ଶବ୍ଦ ବ୍ୟବହାର କରିବ ନାହିଁ।

"..................ଓ..................." ଙ୍କ ଯୋଡ଼ା ମୋତେ ଭଲ ଲାଗେ, କାରଣ ...........................................

...........................................

...........................................

...........................................

ନାମ ...........................................

ବୟସ ........ ଠିକଣା ...........................................

...........................................

ଏ କାଗଜ ଖଣ୍ଡିକ କାଟି ନିଅ। "ଜହ୍ନମାମୁଁ ପ୍ରତିଯୋଗିତା-୩" ଲେଖାଥିବା ଲେବେଲ ଖଣ୍ଡିକ ସାଙ୍ଗରେ ରଖ। ପ୍ରବେଶିକା ଫର୍ମ ପଠାଇବା ବେଳେ ଲଫାଫା ଉପରେ "ପ୍ରତିଯୋଗିତା-୩" ବୋଲି ଉଲ୍ଲେଖ କରିବ। ପଠାଇବାର ଠିକଣା :

ଜହ୍ନମାମୁଁ ପ୍ରତିଯୋଗିତା ୩
ଚନ୍ଦାମାମା ବିଲ୍ଡିଙ୍ଗସ୍
୧୮୮ ଆର୍କୋଟ ରୋଡ୍
ମାଡ୍ରାସ ୬୦୦ ୦୨୬

ପ୍ରତିଯୋଗିତା ୩ ପାଇଁ ଶେଷ ତାରିଖ—୩୧ ଡିସେମ୍ବର ୧୯୮୭

ଲେବେଲ ଖଣ୍ଡିକ କାଟିଥିବ
...ତିଯୋଗିତା ପାଇଁ ରଖ

ମହାନ ଭାରତୀୟ ଗ୍ରନ୍ଥ ଉପରେ ପ୍ରଶ୍ନ

ଭାରତର ଇମାରତ

# ହାମ୍ପି

## ଏକ ସାମ୍ରାଜ୍ୟର ସ୍ମୃତି

ତୁଙ୍ଗଭଦ୍ରା ନଦୀ ତୀରରେ ଚତୁର୍ଦ୍ଦଶ ଶତାବ୍ଦୀର ପ୍ରଥମରେ ଗଢ଼ି ଉଠିଥିଲା ହାମ୍ପି ନଗରୀ । ପରବର୍ତ୍ତୀ ସମୟରେ ବିଜୟନଗର ସାମ୍ରାଜ୍ୟର ରାଜଧାନୀ ଭାବରେ ଖ୍ୟାତି ଲାଭ କରିଥିବା ଏ ନଗରୀ ଦିନେ ଥିଲା ଅତ୍ୟନ୍ତ ସମୃଦ୍ଧ ଓ ସୁନ୍ଦର ।





କିମ୍ବଦନ୍ତି କହେ, ଥରେ ହରିହର ନାମକ ଜଣେ ଯୁବକ ଏକ ବଣୁଆ ଅଞ୍ଚଳରେ ଯୋଡ଼ିଏ ଠେକୁଆ ଗୋଟିଏ ଗଧିଆକୁ ତଡ଼ି ନେଇ ଯାଉଥିବାର ଦେଖିଲେ । ସେ ଏ ଅପୂର୍ବ ଦୃଶ୍ୟ କଥା ବିଖ୍ୟାତ ସନ୍ଥ ବିଦ୍ୟାରଣ୍ୟଙ୍କୁ କହିବାରୁ ସନ୍ଥ କହିଲେ ଯେ ସେହି ବଣୁଆ ମୁଲକ କୌଣସି ରାଜ୍ୟର ରାଜଧାନୀ ହେବାର ଉପଯୁକ୍ତ ସ୍ଥାନ ।

ସନ୍ଥ ବିଦ୍ୟାରଣ୍ୟ ଦେବୀ ଭୁବନେଶ୍ୱରୀଙ୍କୁ ପ୍ରାର୍ଥନା କରି କହିଲେ ଯେ ହରିହର ଓ ତାଙ୍କ ଭାଇ ବୁକ୍କା ଯେପରି ସେ ବଣୁଆ ମୁଲକରେ ସହରଟିଏ ଗଢ଼ିବା ଭଳି ଯଥେଷ୍ଟ ଧନର ଅଧିକାରୀ ହୁଅନ୍ତି । ପ୍ରାର୍ଥନା ଫଳରେ ସତରେ ସେ ଦୁଇ ଭାଇଙ୍କ ଆଗରେ ସୁନାଖଣ୍ଡମାନ ବର୍ଷା ହେଲା ।





ସେମାନେ ସହର ସ୍ଥାପନ କରି ଆଖପାଖ ଅଞ୍ଚଳ ଉପରେ ରାଜତ୍ୱ କଲେ । ହରିହରଙ୍କ ପରେ ଗାଦିରେ ବସିଲେ ବୁକ୍କା । ଉପଦେଷ୍ଟା ଭାବରେ ଏ ଦୁଇ ଭାଇଙ୍କ ସହାୟତା କରୁଥିଲେ ବିଖ୍ୟାତ ବ୍ୟାକରଣବିତ୍ ସାୟନ ଏବଂ ତାଙ୍କ ଭାଇ ମାଧବାଚାର୍ଯ୍ୟ । ଏହି ମାଧବାଚାର୍ଯ୍ୟଙ୍କର ଅନ୍ୟ ନାମ ବିଦ୍ୟାରଣ୍ୟ ।

ବିଜୟନଗର ରାଜ୍ୟର ସବୁ ନରପତିଙ୍କ ଭିତରେ ସବୁଠାରୁ ଇତିହାସ-ପ୍ରସିଦ୍ଧ ହେଲେ କୃଷ୍ଣଦେବରାୟ । ୧୫୦୯ରୁ ୧୫୨୯ ଯାଏ ସେ ରାଜୁତି କରିଥିଲେ । ସେ ରାଜ୍ୟରେ ସୁଶାସନ ପ୍ରତି ଯେତିକି ଧ୍ୟାନ ଦେଉଥିଲେ, ମନ୍ଦିର ଇତ୍ୟାଦି ଗଢ଼ିବା ଦିଗରେ ବି ସେତିକି ଉତ୍ସାହ ଦେଖାଉଥିଲେ ।





ବିଜୟନଗର ସୀମାନ୍ତରେ ବାରମ୍ବାର ଉପଦ୍ରବ କରୁଥିବା ବିଜାପୁର ଓ ବିଦରର ସୁଲତାନ୍‌ମାନଙ୍କୁ ରାଜା କୃଷ୍ଣଦେବରାୟ ପୁରାପୁରି ପରାଜିତ କରିଥିଲେ । ଏ ଦୁଇ ଶତ୍ରୁଙ୍କୁ ଦମନ କରି କୃଷ୍ଣଦେବରାୟ ନିଜ ରାଜ୍ୟର ଭିତ୍ତି ଦୃଢ଼ କରିବାରେ ମନ ଦେଲେ ।

ରାଜା କୃଷ୍ଣଦେବରାୟଙ୍କ ମୃତ୍ୟୁର ୩୬ ବର୍ଷ ପରେ, ୧୫୬୫ ସନର ତାଲିକୋଠା ଯୁଦ୍ଧ କ୍ଷେତ୍ରରେ ବିଜାପୁର, ଗୋଲକୁଣ୍ଡା, ଆହ୍ମଦ୍ ନଗର୍ ଓ ବିଦରର୍ ସୁଲ୍‌ତାନ୍‌ମାନଙ୍କ ମିଳିତ ଆକ୍ରମଣରେ ବିଜୟନଗରର ସୈନ୍ୟଦଳ ପରାସ୍ତ ହେଲେ । ଏ ଶତ୍ରୁମାନେ ହାମ୍ପି ନଗରୀକୁ ଲୁଣ୍ଠନ ଓ ଛାରଖାର କରିଦେଲେ ।





ହାମ୍ପି ନଗରୀର ଧ୍ୱଂସାବଶେଷ ଭିତରେ ଥିବା ବୃହତ୍ତମ ମନ୍ଦିର ହେଲା ପଟ୍ଟାଭିରାମ ମନ୍ଦିର । ୧୫୩୦ରୁ ୧୫୪୨ ପର୍ଯ୍ୟନ୍ତ ରାଜୁତି କରିଥିବା ଅଚ୍ୟୁତ ରାୟ ଏହା ପ୍ରତିଷ୍ଠା କରିଥିଲେ । ଏ ମନ୍ଦିର ବିଧ୍ୱସ୍ତ ନଗରୀର କେନ୍ଦ୍ର ସ୍ଥଳରେ ଅବସ୍ଥିତ ।

ବଠଲ ମନ୍ଦିରର ଶିଳାରଥ ପୋଷାଣ ଶିଳ୍ପର ଅପୂର୍ବ ନିଦର୍ଶନ । ବଠଲ ମନ୍ଦିରରେ ବାଳକୃଷ୍ଣ ପୂଜିତ ହୁଅନ୍ତି । ଶିଳାରଥ ଦେଖିଲେ ମନେ ହେବ ସତେ ଅବା ତାହା ଏବେ ବି ଗଡ଼ପାଇ ପାରିବ !





ଏକ ବ୍ୟାପକ ଅଞ୍ଚଳ ଉପରେ ବିକ୍ଷିପ୍ତ ହାମ୍ପିର ଧ୍ୱଂସାବଶେଷ ଆଜି ବି ଦର୍ଶକମାନଙ୍କୁ ଚମତ୍କୃତ କରେ । ଯେଉଁସବୁ ମୂର୍ତ୍ତି ଦେଖି ଅଭିଭୂତ ହେବାକୁ ହୁଏ, ତହିଁ ଭିତରେ ଅନ୍ୟତମ ହେଲେ ଲକ୍ଷ୍ମୀନରସିଂହ ମୂର୍ତ୍ତି ।



# ଯାଦୁ କୁର୍ତ୍ତା

ଜାପାନର ଗୋଟିଏ ଗାଁରେ ରହୁଥାଏ ଆଟୋକ୍ । ସେ ଗାଁର ସମସ୍ତେ ଥିଲା-ବାଲା ଲୋକ । କଥା ହେଲା, ଯେଉଁ ଯୁଗ କଥା କୁହା ଯାଉଛି, ସେ ଯୁଗରେ ଲୋକଙ୍କର ଆବଶ୍ୟକତା ବିଶେଷ ନଥିଲା । ସମସ୍ତେ ଅଳ୍ପରେ ସନ୍ତୁଷ୍ଟ ରହୁଥିଲେ ।

ଦିନେ ଗାଁ ବାହାରେ ଅପନ୍ତରା ଭିତରେ ଆଟୋକ୍ ବାଉଁଶ ଗଜା ସଂଗ୍ରହ କରୁଥିଲା । ବାଉଁଶ ଗଜାରେ ଅତ୍ୟନ୍ତ ସୁଆଦୁ ତରକାରି ହୁଏ । ହଠାତ୍ ଖଣ୍ଡିଏ ଶୁଖିଲା ବାଉଁଶ ଉଠାଇ ନେଇ ସେ ତା' ଭିତର ଦେଇ ଆକାଶକୁ ଅନାଇଲା—ଯେପରିକି ସେ ଦୂରବୀକ୍ଷଣ ଯନ୍ତ୍ର ସାହାଯ୍ୟରେ ଦେଖୁଛି । ହଠାତ୍ ତା' ଆଖିରେ ପଡ଼ିଲା ଗୋଟାଏ ଉଡ଼ନ୍ତା ଡାହାଣା ।

ସେ ଯୁଗରେ ଅନେକ ଧରଣର ଡାହାଣୀ ଡାହାଣା ଥିଲେ । ତେବେ ସେମାନେ ସାଧାରଣତଃ ମଣିଷଙ୍କ ଆଗକୁ ଦେଖାଯାଉ ନଥାନ୍ତି । କିନ୍ତୁ ଥରେ ଯଦି ଗୋଟାଏ ଦେଖାଗଲା, ତେବେ ସେ ତେଣିକି ଦେଖାଯିବ ।

ଆଟୋକ୍ ପାଖକୁ ଲାଗି ଆସିଲା ସେ ଡାହାଣା । ଆଟୋକ୍ ସେମିତି ସେ ବାଉଁଶ ନଳୀ ଭିତର ଦେଇ ଶୂନ୍ୟକୁ ଅନାଇ କହୁଥାଏ, "ଆଃ, କି ବଢ଼ିଆ !"

"କ'ଣ ଏତେ ବଢ଼ିଆ କହୋ ?" ଡାହାଣା ପଚାରିଲା ।

"ଜହ୍ନ । ସେ କେମିତି ହସୁଛି, କେମିତି ଗୀତ ଗାଉଛି !" ଆଟୋକ୍ କହିଲା ।

"କ'ଣ ହେଲା ଏ ଦିନବେଳାଟାରେ ଜହ୍ନ ହସୁଛି ଓ ଗୀତ ବି ବୋଲୁଛି ?" ଡାହାଣା ଆଶ୍ଚର୍ଯ୍ୟ ହୋଇ ପଚାରିଲା ।

"ଆରେ ବାବୁ, ଜହ୍ନ କ'ଣ ରାତିରେ ହେଲେ ସତରେ ହସିପାରେ ବା ଗୀତ ଗାଇ-

ଜାପାନର ଲୋକକଥା



ପାରେ ? ଏ ବାଉଁଶର ଏମିତି ଗୁଣ, ଏହା ଭିତର ଦେଇ ଦେଖିଲେ ଯାଇ ଜହ୍ନ ହସିବାର ଓ ଗୀତ ବୋଲିବାର ଦେଖି ହେବ, ଶୁଣି ହେବ ।" ଆଠୋକ୍ କହିଲା ।

"ସତେ ? ହେଇଟି ଯୁବକ । ତମେ ମୋ ଟୋପି ନିଅ ଆଉ ସେ ବାଉଁଶ ନଳୀଟି ମୋତେ ଦିଅ ।" ଡାହାଣା କହିଲା ।

"ନା । ତେବେ ତମେ ଯଦି ତମ କୁର୍ତ୍ତାଟି ଦେବ, ତେବେ ମୁଁ ଏହା ଦେଇ ପାରେଁ ।"

ଡାହାଣାର କୁର୍ତ୍ତା ଘାସରେ ତିଆରି । ତଥାପି ଆଠୋକ୍ ତାକୁ ନ ପାଇଲେ ବାଉଁଶ ନଳୀ ଦେବନାହିଁ ବୋଲି ସାଫ୍ ସାଫ୍ କହିଦେଲା । ଆଉ ସେ ନିଜେ ବାଉଁଶ ଭିତର ଦେଇ ଅନାଇ ଥାଏ ସତେ ଅବା କେତେ ଆଶ୍ଚର୍ଯ୍ୟଜନକ ଦୃଶ୍ୟ ସେ ଦେଖି ପାରୁଛି !

ଡାହାଣା ଆଉ ଲୋଭ ସମ୍ବରଣ କରି ପାରିଲା ନାହିଁ । ସେ ନିଜର କୁର୍ତ୍ତାଟି ଦେଇ ଦେଲା । ଆଠୋକ୍ ତାକୁ ବାଉଁଶ ନଳୀ ଧରାଇ ଦେଇ ସେଠାରୁ ଚମ୍ପଟ ଦେଲା ।

ଡାହାଣା ସେତେବେଳେ ବୁଝିବ ଯେ ସେ ବାଉଁଶ ନଳୀର ବାସ୍ତବିକ କିଛି ଗୁଣ ନାହିଁ, ସେ ଇତ୍ତର୍ ଫେରି ଆସିବ । କିନ୍ତୁ ଡାହାଣା ଡାହାଣୀଙ୍କର ସ୍ମୃତି ଶକ୍ତି ଅଧିକ ନୁହେଁ । ଯେଉଁ ଲୋକକୁ ଯେଉଁ ସ୍ଥାନରେ ଦେଖିଥିବେ, ତାକୁ ପୁଣି ସେଇଠି ଦେଖିଲେ ଯାଇ ଚିହ୍ନି ପାରିବେ, ନହେଲେ ନୁହେଁ ।

ଆଠୋକ୍ ଘାସ କୁର୍ତ୍ତା ପିନ୍ଧିପକାଇବା ମାତ୍ରେ ଅଦୃଶ୍ୟ ହୋଇଗଲା । "ଆଃ, କି ମଜା ହେବ !" ଏହା କହି ଆଠୋକ୍ ଗାଁର ବଡ଼ ରାସ୍ତାରେ ଯାଇ ପହଞ୍ଚିଲା । ତାକୁ କେହି ଦେଖି ପାରୁ ନଥାନ୍ତି । ଗାଁର ମହାଜନ ନିଜ ପାଇଁ ଗୋଟାଏ ନୂଆ ପୋଷାକ କିଣି ଫେରୁଥାନ୍ତି । ଅଦୃଶ୍ୟ ଆଠୋକ୍ ଯାଇ ତାଙ୍କ ବାମ କାନଟି ମୋଡି ଦେଲା । ସେ ଆଶ୍ଚର୍ଯ୍ୟ ହୋଇ ଗାଁ ଆଡ଼େ ଅନାଇବା ବେଳକୁ ଆଠୋକ୍ ତାଙ୍କ ଡାହାଣ କାନ ମୋଡ଼ି ଦେଲା । ତା'ପରେ ଦେଲା ତାଙ୍କୁ କୁତୁକୁତୁକାଳି । ସେ ଲୁଗାଟକ ଫୋପାଡ଼ି ଦେଲେ ଓ ଚିତ୍କାର କଲେ । କେତେ ଲୋକ ଦୌଡ଼ି ଆସିଲେ । ଆଠୋକ୍

ସେମାନଙ୍କ ଭିତରୁ କାହା ଗାଲରେ ଗୁପୁଡ଼ା ଦେଲା ତ କାହା ନାକ ମୋଡ଼ି ଦେଲା, କାହାର ବା କେଶ ଧରି ଟାଣି ଦେଲା ।

ସେମାନେ ଆଶ୍ଚର୍ଯ୍ୟ ହେବା ବେଳକୁ ରାସ୍ତା କଡ଼ରେ ମାଛ ବିକୁଥିବା ଗୋଟିଏ ସ୍ତ୍ରୀ ଲୋକର ସବୁଠାରୁ ବଡ଼ ମାଛଟି ଆଚୋକ୍ ଉଠାଇ ନେଲା । ସମସ୍ତେ ଦେଖୁଥାନ୍ତି ମାଛ ଯେପରି ଉଡ଼ି ଯାଉଛି ।



ଆଚୋକ୍ ଠୋ ଠୋ ହସୁଥାଏ ଓ ଶୁଶୁରି ମାରୁଥାଏ । ଲୋକେ ତାହା କୌଣସି ଭୂତ ପ୍ରେତର ବୋଲି ଭାବୁଥାନ୍ତି ।

କିଛି ସମୟ ପରେ ଆଚୋକ୍ ନିଜ ଘରକୁ ଫେରିଗଲା । ତା' ମା ତାହାର ପାଦଶବ୍ଦ ଶୁଣିଲେ, କିନ୍ତୁ ତାହାକୁ ଦେଖିଲେ ନାହିଁ । ଶୋଇବା ଘରେ ଆଚୋକ୍ ନିଜ ଘାସ କୁର୍ତ୍ତି ଖୋଲି ପକାଇବା ମାତ୍ରେ ଦେଖାଗଲା, ତା' ମା ସେକଥା ଲକ୍ଷ୍ୟ କଲେ । କିନ୍ତୁ ବୁଦ୍ଧିମତୀ ମହିଳା କିଛି କହିଲେ ନାହିଁ ।

ଆଚୋକ୍ ନିଦରେ ଶୋଇଗଲା । ତା' ମା ସେ ଘାସ କୁର୍ତ୍ତିଟି ଉଠାଇ ଆଣି ନିଆଁରେ ପକାଇଦେଲେ । "ଏଭଳି ଯାଦୁକରୀ ଜିନିଷ ସମ୍ପର୍କରେ ରହିବା ମୋତେ ମଙ୍ଗଳକର ନୁହେଁ ।" ସେ ମନେ ମନେ ନିଜକୁ କହିଲେ ।

ଯେତେବେଳେ ଆଚୋକ୍‌ର ନିଦ ଭାଙ୍ଗିଲା, ସେତେବେଳକୁ ସେ କୁର୍ତ୍ତି ପୋଡ଼ି ପାଉଁଶ ହୋଇଗଲାଣି । ସେ କୁର୍ତ୍ତି ଖୋଜିବାରୁ ତା' ମା ତାକୁ ଜାମା ପୋଡ଼ି ଦେଇଥିବା କଥା ନିଷ୍କପଟରେ କହିଦେଲେ । ଆଚୋକ୍ ରୁଷ୍ଟ ହୋଇ ତା' ମା'କୁ ଗାଳିଦେଲା, କିନ୍ତୁ ସେଥିରେ ବା ଲାଭ କ'ଣ ହୁଅନ୍ତା !

ଆଚୋକ୍ ଚୁଲିରୁ ପାଉଁଶତକ ସଂଗ୍ରହ କରି ଘର ପଛପଟକୁ ଗଲା ଓ ନିଜ ଦେହରେ ସେ ପାଉଁଶ ଲେପିଲା । ଦେହର ଯେଉଁ ଯେଉଁ ଅଂଶରେ ପାଉଁଶ ଲେପା ହେଲା, ସେସବୁ ଅଂଶ ଅଦୃଶ୍ୟ ହେବାକୁ ଲାଗିଲା । ଯେତେବେଳେ ସେ ପୁରା ଅଦୃଶ୍ୟ ହୋଇଗଲା, ଝଟ୍‌କିନା ଘରୁ ବାହାରିଗଲା ।

ଗାଁ ଶେଷ ମୁଣ୍ଡରେ ଗୋଟାଏ ମଦ ଦୋକାନ ଥାଏ । ସେଠି ବସି କେତେକ

ଲୋକ ଖିଆପିଆ କରୁଥିଲେ ଓ ସେଦିନ ଗାଁ ଦାଣ୍ଡରେ ଯେଉଁ ଆଶ୍ଚର୍ଯ୍ୟଜନକ ଘଟଣା ଘଟିଥିଲା, ସେ କଥା ଆଲୋଚନା କରୁଥିଲେ । ମଦ ଦୋକାନୀ ନିଜେ ସେ ଦୃଶ୍ୟ ଦେଖି ନଥିଲା । ସେ କହିଲା, "ଯେଉଁମାନେ ସେ ଘଟଣା ଦେଖିଲେ, ସେମାନେ ମୋହର ଦୋକାନରୁ ମଦ ପିଇ ଯାଇଥିବେ ।"

ସେ ଏତକ କହିସାରିବା ବେଳକୁ କିଏ ତାକୁ ଗୋଟାଏ ଧକ୍କା ଦେଲା । ସେ ତା' ନିଜ ମଦ ଗର ଉପରେ ପଡ଼ିଗଲା । ମଦ ଗରରୁ ମଦ ବାହାରି ଆସୁଥାଏ, କିନ୍ତୁ ସେ ମଦ ଧାର ଅଦୃଶ୍ୟ ହୋଇ ଯାଉଥାଏ । ଅର୍ଥାତ୍ ଆଟୋକ୍ ମୁହଁ ଲଗାଇ ତାହା ପିଇ ଯାଉଥାଏ ।

ଦୋକାନୀ ଓ ଅନ୍ୟମାନେ ଢାବା ହୋଇ ଅନାଇଥାନ୍ତି । ଯେଉଁ ମୁହଁ ମଦ ପିଉଥାଏ, ସେ ମୁହଁ କ୍ରମେ ଦେଖାଗଲା । କାରଣ ହେଲା, ମଦ ଦ୍ୱାରା ଆଟୋକ୍‌ର ମୁହଁରୁ ସେ ପାଉଁଶତକ ଧୋଇ ହୋଇ ଯାଇଥାଏ ।

"ଦେଖ ଦେଖ, ଗୋଟାଏ କଟା ମୁଣ୍ଡ ଆସି ମଦ ପିଉଛି ।" କେହି ଜଣେ କହିଲା । ସେ ଦୃଶ୍ୟ ଦେଖି ଆଉ ଜଣେ ଦୁଇଜଣ ଚେତା ହରାଇଲେ । ଆଟୋକ୍ ବୁଝିପାରିଲା ଯେ ତା' ମୁହଁ ଦିଶୁଛି । ସେ ଦୋକାନରୁ ଦୌଡି ପଳାଇଲା । ଲୋକେ ତା' ପଛରେ ଗୋଡ଼ାଇଲେ । ତା' ଦେହ ଝାଳରେ ଓଦା ହୋଇଗଲା । ଝାଳ ଦ୍ୱାରା ପାଉଁଶ ଧୋଇ ହୋଇଯିବାରୁ ତା' ଚେହେରା ଦେଖାଗଲା । ଲୋକେ ଆହୁରି ପ୍ରବଳ ଗତିରେ ଦୌଡ଼ିଲେ । ଆଟୋକ୍ ଗୋଟାଏ ନଈରେ ପଶିଗଲା । ଲୋକେ କୂଳରେ ଜମା ହୋଇଗଲେ । ସେ ବିକଳ ସ୍ୱରରେ ସବୁ କହିଗଲା । ଲୋକେ ତା' ଉପରେ ଖପା ହେବା ପରିବର୍ତ୍ତେ ବହେ ହସିଲେ ଓ କହିଲେ, "ଆରେ ଦୁଷ୍ଟ ଟୋକା, ତୁ ଡାହାଣୀଠୁଁ ତା' ଜାମା ଠକିନେଲୁ ତ ନେଲୁ, କିନ୍ତୁ ଆମକୁ ଏତେ ହରକତ୍ କଲୁ କାହିଁକି ?"





# କୃଷ୍ଣାବତାର

ପ୍ରାଚୀନ କାଳରେ କାଳନେମି ନାମରେ ଗୋଟାଏ ଦାନବ ଥାଏ । ତାହାର ଥିଲା ଏକଶହ ମସ୍ତକ ଓ ଦୁଇଶହ ହାତ । ସେ ଥିଲା ଅତ୍ୟନ୍ତ ବଳଶାଳୀ । ପୁଣି ବହୁ କଠୋର ତପସ୍ୟା ଦ୍ୱାରା ସେ ବ୍ରହ୍ମାଙ୍କୁ ସନ୍ତୁଷ୍ଟ କରି ଅନେକବାର ବରପ୍ରାପ୍ତ କଲା । ସେତେବେଳେ ଦେବଦାନବଙ୍କ ମଧ୍ୟରେ ଯୁଦ୍ଧ ହୋଇ ଦାନବମାନେ ବାରମ୍ବାର ହାରିଯିବାର ଶୁଣି ସେ ସମସ୍ତ ଦାନବଦଳଙ୍କୁ ଏକଜୁଟ୍ କରି ନିଜେ ସେନାପତି ହୋଇ ଦେବତାମାନଙ୍କ ସହିତ ଯୁଦ୍ଧ କରିବାକୁ ଗଲା ।

ତା'ର ଭୀଷଣ ପରାକ୍ରମ, ପ୍ରଚଣ୍ଡ ଶକ୍ତି ଓ ବିଚକ୍ଷଣ ଯୁଦ୍ଧ କୌଶଳ ଦେଖି ଦେବତାମାନେ ଶଙ୍କିଗଲେ । ତଥାପି ଯୁଦ୍ଧ ସକାଶେ ସେ ଆହ୍ୱାନ କରିବାରୁ ସେମାନେ ବାହାରି ଆସିଲେ ।

ଘୋର ଯୁଦ୍ଧ ହେଲା ଓ ଦେବତାମାନେ ପରାଜିତ ହେଲେ । ତା'ପରେ ସେ ତିନିଲୋକ ଜୟ କଲା । କ୍ରମେ ତା'ର ଗର୍ବ ବଢ଼ିବାକୁ ଲାଗିଲା । ଦେବଗଣ ଏଣେତେଣେ ଭୟରେ ଓ ଦୁଃଖରେ ଆତ୍ମଗୋପନ କରି ରହିଲେ । ମୁନିଋଷିମାନେ ଦାନବମାନଙ୍କ ଔଦ୍ଧତ୍ୟ ଦେଖି ଦୁଃଖରେ ମୃହ୍ୟମାନ ହେଲେ । ବିଷ୍ଣୁ ସବୁ ଦେଖୁଥା'ନ୍ତି କିନ୍ତୁ ନୀରବ ଥା'ନ୍ତି । କାରଣ ସେତେବେଳକୁ କାଳନେମିର ମରିବାର ସମୟ ହୋଇ ନଥାଏ । ସମସ୍ତ ଲୋକ ଜୟ କରିସାରି ଦିନେ ସେ ବିଷ୍ଣୁଙ୍କ ସହିତ ଯୁଦ୍ଧ କରିବାକୁ ଯାଇ କ୍ଷୀରସାଗର ତଟରେ ପହଞ୍ଚି ବିଷ୍ଣୁଙ୍କୁ

## ୧. କାଳନେମି ପ୍ରସଙ୍ଗ



ଯୁଦ୍ଧକୁ ଆହ୍ୱାନ କରି କହିଲା, "ବିଷ୍ଣୁ, ଆମ ଦାନବକୁଳର ମିତ୍ର ମଧୁକୈଟଭଙ୍କୁ ବିନା ଅପରାଧରେ ତମେ ମାରିଛ । ଦୈତ୍ୟକୁଳର ମଣିସ୍ୱରୂପ ହିରଣ୍ୟକଶିପୁକୁ ହତ୍ୟା କରିଛ । ଆମ ରାଜା ବଳୀଙ୍କୁ ମଧ୍ୟ ପାତାଳକୁ ପଠାଇ-ଦେଇ ଇନ୍ଦ୍ରଲୋକ ଅଧିକାର କରି ବସିଛ ବୋଲି ନିଜକୁ ଅଦ୍ୱିତୀୟ ବୀର ବୋଲି ଭାବୁଛ ନା ? ଅନେକ ଦୈତ୍ୟ ସ୍ତ୍ରୀମାନେ ଅସମୟରେ ବୈଧବ୍ୟପ୍ରାପ୍ତ ହୋଇଛନ୍ତି । ଏ ସବୁର ପ୍ରତିଶୋଧ ମୁଁ ନେବାକୁ ଆସିଛି ।"

ଭଗବାନ୍ ବିଷ୍ଣୁ କାଳନେମିକୁ ଚେତାବନୀ ଦେଇ କହିଲେ, "ଶୁଣ, ଦୈତ୍ୟରାଜ, ଅତ୍ୟନ୍ତ ଗର୍ବ ହେତୁ ତମେ ପ୍ରଳାପ କରି ଚାଲିଛ । ଯିଏ ପ୍ରକୃତରେ ବୀର ସେ କେବେ ନିଜେ ଦମ୍ଭ କରି ନିଜର ବୀରତ୍ୱ କହିବୁଲେ ନାହିଁ । ତମେ ବ୍ରହ୍ମାଙ୍କଠାରୁ ବରପ୍ରାପ୍ତ କରି ଅହଂକାରବଶତଃ ବହୁତ ଦୁଷ୍କର୍ମ କରିସାରିଲଣି । ଏବେ ତମେ ଯଦି ଚାହୁଁଛ ତେବେ ମୁଁ ତୁମ ସହିତ ଯୁଦ୍ଧ କରି ଦେବତାମାନଙ୍କ ହୃତ ଐଶ୍ୱର୍ଯ୍ୟ ଫେରାଇ ଆଣି ସେମାନଙ୍କୁ ଦେଇଦେବି ।"

ବିଷ୍ଣୁଙ୍କ କଥା ଶୁଣି ସେ ରାଗରେ କମ୍ପି ଉଠିଲା । ପ୍ରଥମେ ସେ ଗରୁଡ଼ ଉପରେ ଗଦା ପ୍ରହାର କଲା । ବିଷ୍ଣୁ ତା'ପରେ ନିଜର ଓ ଗରୁଡ଼ର ଶରୀରକୁ ବିସ୍ତାର କରିବାକୁ ଲାଗିଲେ । ତା'ପରେ ଯୁଦ୍ଧ ଚାଲିଲା । କାଳନେମି ପ୍ରାଣ-ମୂର୍ଚ୍ଛା ଯୁଦ୍ଧ କରୁଥାଏ ଓ ବିଷ୍ଣୁ ବିଚଳିତ ନ ହେବାର ଦେଖି ଆଶ୍ଚର୍ଯ୍ୟ ହେଉଥାଏ । କିଛି ସମୟ ପରେ ବିଷ୍ଣୁ ଚକ୍ର ପଠାଇଲେ । ସେଥିରେ ଦୈତ୍ୟ କାଳନେମି ସହିତ ତା'ର ଅନୁଚରବର୍ଗ ମଧ୍ୟ ମରିଗଲେ । ଇନ୍ଦ୍ରଲୋକ ଦୈତ୍ୟର ଅତ୍ୟାଚାରରୁ ରକ୍ଷା ପାଇ ଶାନ୍ତ ହେଲା । ଦେବତାମାନେ ବ୍ରହ୍ମାଙ୍କୁ ସାଥିରେ ନେଇ ଭଗବାନ୍ ବିଷ୍ଣୁଙ୍କୁ ସ୍ତବ କରିବାକୁ ଲାଗିଲେ ।

ଶ୍ରୀବିଷ୍ଣୁ ଦେବତାମାନଙ୍କ ସ୍ତୁତିରେ ପ୍ରସନ୍ନ ହୋଇ କହିଲେ, "ଏବେ ତୁମେମାନେ ନିର୍ଭୟରେ କାଳଯାପନ କରିବ । ବର୍ତ୍ତମାନ ଯଜ୍ଞ ସବୁ ମଧ୍ୟ ନିର୍ବିଘ୍ନରେ ସମ୍ପନ୍ନ ହେବ ଏବଂ

ତୁମେମାନେ ଯଜ୍ଞଭାଗ ପାଇବ । କିନ୍ତୁ ସର୍ବଦା ଜାଗ୍ରତ ଓ ସତର୍କତାର ସହିତ ଦାନବମାନଙ୍କ ଗତିବିଧି ଲକ୍ଷ୍ୟ କରୁଥିବ ।" ତା'ପରେ ଶ୍ରୀବିଷ୍ଣୁ କ୍ଷୀରସାଗରସ୍ଥ ତାଙ୍କର ଶେଷ-ଶଯ୍ୟାକୁ ପ୍ରସ୍ଥାନ କରି ଯୋଗନିଦ୍ରାରେ ଲୀନ ହୋଇଗଲେ ।

ଭଗବାନ୍ ବିଷ୍ଣୁ ଯୋଗନିଦ୍ରାରେ ଥିବା ସମୟରେ ସତ୍ୟଯୁଗ ବ୍ୟତୀତ ହୋଇଗଲା । ତା'ପରେ ରାବଣ ବଧ ନିମିତ୍ତ ଥରେ ତ୍ରେତୟାରେ ସେ ଅବତାର ଗ୍ରହଣ କରିଥିଲେ । ଦାନବ ବଧ ପରେ ପୁଣି ସେ ଫେରିଯାଇ ଶେଷଶଯ୍ୟାରେ ଯୋଗନିଦ୍ରାରେ ଲୀନ ଅବସ୍ଥାରେ ଥା'ନ୍ତି । ତ୍ରେତୟା ପରେ ଦ୍ୱାପର ଯୁଗରେ ରାଜାମାନେ ପରାକ୍ରମଶାଳୀ ହୋଇ ଉଠିଲେ ଲୋକସଂଖ୍ୟା ବହୁତ ବୃଦ୍ଧି ପାଇଲା । ଚତୁର୍ଦ୍ଦିଗରେ ପୁଣି ପାପ ଓ ଅନାଚାର ବ୍ୟାପିଗଲା । ଧର୍ମର ଗ୍ଲାନି ଘଟିଲା । ପୃଥିବୀ-ମାତା ଏସବୁ ସହ୍ୟ କରି ନପାରି ବ୍ରହ୍ମାଙ୍କ ନିକଟରେ ନିଜର ଦୁଃଖ ଜଣାଇଲେ । ବ୍ରହ୍ମା ଦେବତାମାନଙ୍କୁ ସାଥିରେ ନେଇ କ୍ଷୀରସାଗର ତଟରେ ପହଞ୍ଚି ପ୍ରାର୍ଥନା କରି ଯୋଗନିଦ୍ରାରୁ ଶ୍ରୀବିଷ୍ଣୁଙ୍କୁ ଜାଗ୍ରତ କରାଇଲେ ।

ଶ୍ରୀବିଷ୍ଣୁ ଧୀରେ ଧୀରେ ଆଖି ଖୋଲି ଦେବତାମାନଙ୍କୁ ଚାହିଁଲେ ଓ ନାନାଦି କୁଶଳ ପ୍ରଶ୍ନ କଲେ । ତା'ପରେ ସେ କହିଲେ, "ଦେବଗଣ, କାହିଁକି ପୁଣି ତୁମେମାନେ ଆସିଛ ? ସବୁ କିଛି କୁଶଳ ତ ? ତ୍ରିଲୋକ ଅସୁରମାନଙ୍କ ଅତ୍ୟାଚାରରୁ ମୁକ୍ତ ତ ?"





ବିଷ୍ଣୁଙ୍କ ପ୍ରଶ୍ନର ଉତ୍ତର ଦେବାକୁ ଯାଇ ବ୍ରହ୍ମା କହିଲେ, "ପ୍ରଭୁ, ସବୁ କୁଶଳ । ସତ୍ୟ ଏବଂ ଧର୍ମ ପଥରେ ରହି ରାଜାମାନେ ପ୍ରଜା-ପାଳନ କରୁଛନ୍ତି । ଯୁଗକ୍ରମ, ଦେବକନ୍ୟା, ପିତୃପୁରୁଷଙ୍କ କାର୍ଯ୍ୟ ସବୁ କିଛି ଠିକ୍ ଭାବରେ ଚାଲିଛି । କୌଣସି ବ୍ୟାଧି ବା ପ୍ରାକୃତିକ ବିପର୍ଯ୍ୟୟର ପ୍ରାଦୁର୍ଭାବ ନାହିଁ । ମାନବ ପୂର୍ଣ୍ଣ ଆୟୁ ପ୍ରାପ୍ତ କରିଛନ୍ତି । କ୍ରମେ ଗ୍ରାମ, ଜନପଦ ଓ ନଗରୀମାନଙ୍କର ଲୋକସଂଖ୍ୟା ବଢ଼ି ଚାଲିଛି । ପୃଥିବୀମାତା ସେମାନଙ୍କ ଭାର ବହନ କରିବାକୁ ସମର୍ଥ ନୁହନ୍ତି । ତେଣୁ ଏହିପରି ଏକ ସଙ୍କଟରେ କ'ଣ କରାଯିବ ? ଧର୍ମର ଗ୍ଲାନି ଘଟିବ ନାହିଁ ଅଥଚ ଲୋକସଂଖ୍ୟା କମିଯିବ ଏଥିପାଇଁ ଆମେମାନେ କୌଣସି ଉପାୟ ଖୋଜୁଛୁ । ଆପଣ କୃପା କରି ମେରୁ ପର୍ବତକୁ ଆସନ୍ତୁ ଓ ଆମର କ'ଣ କର୍ତ୍ତବ୍ୟ ସେ ବିଷୟରେ କିଛି ଉପଦେଶ ଦିଅନ୍ତୁ ।"

ବ୍ରହ୍ମାଙ୍କ କଥା ଶୁଣି ଭଗବାନ୍ ବିଷ୍ଣୁ ନିଜର ଆୟୁଧମାନ ଧରି ଗରୁଡ଼ ଉପରେ ବିଜେ କଲେ । ତା'ପରେ ଦେବତାମାନଙ୍କ ସହ ଯାଇ ମେରୁପର୍ବତ ଉପରେ ପହଞ୍ଚିଲେ । ସେଠାରେ ବିଶ୍ୱକର୍ମାଙ୍କ ଦ୍ୱାରା ନିର୍ମିତ ଏକ ବିରାଟ, ସୁନ୍ଦର ସଭାଗୃହ ଥିଲା । ସେଠାରେ ଶ୍ରୀବିଷ୍ଣୁ ସିଂହାସନ ଅଲଂକୃତ କରି ବସିଲେ । ତା'ପରେ ଦେବତାମାନେ ନିଜ ନିଜର ଆସନ ନେଇ ବସିଲେ । ସେଠାରେ ଆସି ପହଞ୍ଚିଲେ ପୃଥିବୀମାତା, ଅତି ଦୀନଭାବରେ ସେ ବିଷ୍ଣୁଙ୍କ ସମ୍ମୁଖରେ ଦଣ୍ଡାୟମାନ ହୋଇଥା'ନ୍ତି । ତା'ପରେ ଦେବତାମାନଙ୍କ ଅନୁରୋଧରେ ସେ ତାଙ୍କର କଷ୍ଟର କାହାଣୀ କହିଲେ ।

ସେ କହିଲେ, "ଭଗବାନ୍ ବିଷ୍ଣୁ ଓ ସମସ୍ତ ଦେବଗଣ ମୋ କଷ୍ଟ ଜାଣନ୍ତି । ଅଧିକ କ'ଣ ବା କହିବି ? ପୃଥିବୀର ଲୋକସଂଖ୍ୟା ଖୁବ୍ ବେଶି ବୃଦ୍ଧି ପାଇବାରୁ ସେମାନଙ୍କ ଭାର ମୋ ପକ୍ଷରେ କ୍ରମେ ଅସହ୍ୟ ହୋଇ ଉଠୁଛି । ଆପଣମାନେ ସମସ୍ତେ ଭଗବାନ୍ ବିଷ୍ଣୁଙ୍କ ସହିତ ମୋ ପ୍ରତି ଦୟା କରି ଏଥିର କିଛି ପ୍ରତିକାର କରନ୍ତୁ ।"

ପୃଥିବୀମାତାଙ୍କ କଷ୍ଟ ଶୁଣି ଦେବତା, ଯକ୍ଷ, ସିଦ୍ଧ, ଗନ୍ଧର୍ବ, ନାଗ ଆଦି ପରସ୍ପର ମଧ୍ୟରେ

ଅନେକ ବିଚାର କରି ବ୍ରହ୍ମାଙ୍କୁ କହିଲେ, "ପିତାମହ, ଆପଣ ପ୍ରଜାପତି ଓ ସୃଷ୍ଟିକର୍ତ୍ତା । ଆପଣ କୌଣସି ଉପାୟ କରନ୍ତୁ । ପୃଥିବୀ-ମାତାଙ୍କ କଷ୍ଟ ହରଣ କରିବା ଆମର ସମସ୍ତିଙ୍କର କର୍ତ୍ତବ୍ୟ ।"



ବ୍ରହ୍ମା କହିଲେ, "ଥରେ ସନ୍ଧ୍ୟା ସମୟରେ ମୁଁ ଓ ମହର୍ଷି ଅଗସ୍ତ୍ୟ ସମୁଦ୍ର କୂଳରେ ବସି ନାନା ବିଷୟରେ ଆଲୋଚନା କରୁଥିଲୁ । ସେତେବେଳେ ଚନ୍ଦ୍ରୋଦୟ ହେବାରୁ ସାଗରର ଲହରୀମାଳ ଫୁଲି ଉଠି ବହୁ ଉପରକୁ ଉଠୁଥାଏ । ହଠାତ୍ ଗୋଟିଏ ଲହଡ଼ି ଆମ ଉପରେ ଝାଙ୍ପିପଡ଼ି ଆମକୁ ଓଦା କରିଦେଲା । ଆମେ ଦୁହେଁ ଏସବୁ ଦେଖି ଖୁବ୍ ହସିଲୁ । ମୁଁ ସମୁଦ୍ରକୁ କହିଲି, "ସାଗର, କ'ଣ ଏମିତି ପିଲାଳିଆ ବ୍ୟବହାର କରୁଛ ? ଶାନ୍ତ ହୁଅ ।" ମୋ କଥା ଶୁଣି ସମୁଦ୍ର ଶାନ୍ତ ହୋଇଗଲା । ତା'ପରେ ସମୁଦ୍ର ମାନବରୂପ ଧରି ଦେବୀ ଗଙ୍ଗାଙ୍କ ସହିତ ଆମ ଆଗରେ ପ୍ରତ୍ୟକ୍ଷ ହେଲେ । ସେମାନଙ୍କୁ ଦେଖିବା ମାତ୍ରେ ଭବିଷ୍ୟତରେ ଘଟିବାକୁ ଯାଉଥିବା କିଛି ଦୃଶ୍ୟ ମୁଁ ଦେଖି ପାରିଲି । ମୁଁ କହିଲି, "ହେ ସାଗର, ତମେ ପୃଥିବୀ ଉପରେ ଜଣେ ରାଜା ରୂପରେ ଜନ୍ମ ନେବ । ଯେହେତୁ ମୋ ସାମନାରେ ତମେ ଆଜି ରାଜସ୍ ଗୁଣ ଦେଖାଇଲ । ପୁଣି ମୋ କଥା ମାନି ଶାନ୍ତ ହୋଇଗଲ, ତେଣୁ ତୁମ ନାମ ହେବ ଶାନ୍ତନୁ । ଦେବୀ ଗଙ୍ଗା ମଧ୍ୟ ମାନବୀ ରୂପନେଇ ତୁମର ପତ୍ନୀ ହୋଇ ରହିବେ ।"

ମୋ କଥା ଶୁଣି ସାଗର ବିନମ୍ରତା ପୂର୍ବକ ନିବେଦନ କରି କହିଲେ, "ପିତାମହ, ବିଶେଷ ଦିନମାନଙ୍କରେ, ବାୟୁର ପ୍ରତାଡ଼ନ ଦ୍ୱାରା ଓ ଚନ୍ଦ୍ରୋଦୟ ସମୟରେ ସ୍ୱାଭାବିକ୍ ଭାବରେ ମୋର ଜଳ ଫେଣପୂର୍ଣ୍ଣ ହୁଏ ଓ ଲହରୀମାଳ ଉର୍ଦ୍ଧ୍ୱକୁ ଉଠିଥାଏ । ଏହା ମୁଁ କୌଣସି ରାଜସିକ ଭାବ ବା ଅହଂକାରବଶତଃ କରିନାହିଁ । ଏପରି ପରିସ୍ଥିତିରେ ମୋତେ ମାନବଜନ୍ମ ନେବାର ଅଭିଶାପ କାହିଁକି ଦେଲେ ?"

ମୁଁ କହିଲି, "ବତ୍ସ, ଲୋକକଲ୍ୟାଣ ପାଇଁ ମୁଁ ତୁମକୁ ଏକଥା କହିଲି; ଏହା ଅଭିଶାପ



ନୁହେଁ । ତମେ ପବିତ୍ର ଭରତବଂଶରେ ଜନ୍ମ ହେବ । ଏହି ଗଙ୍ଗାଙ୍କ ସହାୟତାରେ ତମେ ଶାପଗ୍ରସ୍ତ ବସୁମାନଙ୍କୁ ମୁକ୍ତ ଦେବ । ତା'ପରେ ସତ୍ୟବତୀ ନାମକ ଯୁବତୀଙ୍କୁ ବିବାହ କରି ଦୁଇଟି ପୁତ୍ରଙ୍କୁ ଜନ୍ମ ଦେଇ ଶରୀର ତ୍ୟାଗ କରି ପୁଣି ନିଜ ସ୍ଥାନକୁ ଫେରି ଆସିବ । ସେହି ପୁତ୍ରମାନେ ବଂଶ ବିସ୍ତାର କରିବେ ।"

ସେହି ଶାନ୍ତନୁଙ୍କ ପୁତ୍ରଙ୍କଠାରୁ ଧୃତରାଷ୍ଟ୍ର ଓ ପାଣ୍ଡୁ ଜନ୍ମ ନେବେ । କାଳକ୍ରମେ ଧୃତରାଷ୍ଟ୍ରଙ୍କର ଶହେ ପୁଅ ଓ ପାଣ୍ଡୁଙ୍କର ପାଞ୍ଚପୁତ୍ର ହେବେ । ସେମାନଙ୍କ ମଧ୍ୟରେ ମହାଯୁଦ୍ଧ ହେବ । ସେହି ମହାଯୁଦ୍ଧରେ ପୃଥିବୀର ପ୍ରାୟ ସମସ୍ତ ରାଜା, ମହାରାଜାମାନେ ଅଂଶ ଗ୍ରହଣ କରିବେ । ଲକ୍ଷ ଲକ୍ଷ ସଂଖ୍ୟାରେ ମନୁଷ୍ୟ, ହାତୀ, ଘୋଡ଼ା, ଇତ୍ୟାଦି ବିନାଶ ପ୍ରାପ୍ତ ହୋଇ ପୃଥିବୀର ଭାର ଲାଘବ ହେବ । କଳହ ଉତ୍ପନ୍ନ କରୁଥିବା କଳିଯୁଗର ଅଂଶ ଧୃତରାଷ୍ଟ୍ରଙ୍କ ପତ୍ନୀ ଗାନ୍ଧାରୀଙ୍କ ମଧ୍ୟରେ ରହିବ ଓ ଯମରାଜଙ୍କ ଅଂଶ ପାଣ୍ଡୁ ପତ୍ନୀ କୁନ୍ତୀଙ୍କ ଗର୍ଭରେ ରହିବ । ଅନ୍ୟାନ୍ୟ ଦେବତାଙ୍କ ଅଂଶ ଭିନ୍ନ ଭିନ୍ନ ମାନବରୂପ ନେଇ ଜନ୍ମ ନେବେ ।"

ବ୍ରହ୍ମାଙ୍କ ମୁହଁରୁ ଭବିଷ୍ୟତ ଘଟଣାବଳୀ ଶୁଣି ସଭାସଦ୍‌ବର୍ଗ ତାଙ୍କୁ ସ୍ତୁତି କଲେ । ଠିକ୍ ଏହି ସମୟରେ ନାରଦ ଆସି ସେଠାରେ ପହଞ୍ଚିଲେ । ସେ ବୀଣାବାଦନ କରି ଶ୍ରୀବିଷ୍ଣୁଙ୍କର ସ୍ତୁତିଗାନ କରି ସମସ୍ତଙ୍କୁ ଆନନ୍ଦ ପ୍ରଦାନ କଲେ । ତା'ପରେ ସେ ଭଗବାନ୍ ବିଷ୍ଣୁଙ୍କୁ କହିଲେ, "ପ୍ରଭୁ, ଏହି ଦେବତାମାନେ ପୃଥିବୀର ଭାର ଲାଘବ କରିବାକୁ ଯେଉଁ ଯେଉଁ କାର୍ଯ୍ୟକ୍ରମ ସ୍ଥିର କରିଛନ୍ତି ତାହା ଆପଣଙ୍କ ବିନା କପରି ସମ୍ଭବ ହେବ? ତେଣୁ ଆପଣ ମଧ୍ୟ ପୃଥିବୀ ଉପରେ ଅବତାର ଗ୍ରହଣ କରି ନିଜର ଲୀଳା ପ୍ରକଟ କରିବେ । ଆପଣଙ୍କ ବ୍ୟତୀତ ଏ ଦେବତାମାନଙ୍କ ଯୋଜନା କେବେ ମଧ୍ୟ ସାଫଲ୍ୟ ଲାଭ କରିବ ନାହିଁ । ସେହିକଥା ମନେ ପକାଇବା ପାଇଁ ମୁଁ ଅତିଶୀଘ୍ର ଏଠାକୁ ଆସିଲି । ଏବେ ପୃଥିବୀ ଉପରେ ଅନେକ ଗୁଡ଼ିଏ ଅସୁର ମନୁଷ୍ୟ ରୂପ ଧାରଣ କରି ରାଜ୍ୟଶାସନ କରି ରହିଛନ୍ତି । ଆପଣ ଶ୍ରୀରାମ

ହୋଇ ରାବଣକୁ ବଧ କରିଥିଲେ । ତା'ପରେ ଶତ୍ରୁଘ୍ନ ରାବଣର ଭଣଜା ମଧୁ ଓ ତା'ର ପୁତ୍ର ଲବଣାସୁରକୁ ବଧ କରି ମଧୁପୁରୀ ନଗରର ନୂତନ ନାମ ଦେଲେ ମଥୁରାପୁରୀ । ଅନେକ ରାଜା ସେଠାରେ ରାଜତ୍ୱ କରିଛନ୍ତି । ଏବେ କଂସ ନାମକ ମହାସୁର ସେଠାରେ ରାଜତ୍ୱ କରୁଛି । ସେହିଁ ସତ୍ୟଯୁଗର କାଳନେମି ଜନ୍ମ ନେଇଛି । ଅନ୍ୟାନ୍ୟ ଅସୁରମାନେ ମଧ୍ୟ ତା' ସହିତ ଜନ୍ମ ନେଇ ସାଧୁମାନଙ୍କ ଉପରେ ଅତ୍ୟାଚାର କରୁଛନ୍ତି । ଧର୍ମର ଗ୍ଲାନି ଘଟିଛି । କେତେ ଅସୁର ପ୍ରାଗ୍‌ଜ୍ୟୋତିଷପୁରରେ ନରକାସୁର ସହିତ ରହି ରାଜତ୍ୱ କରୁଛନ୍ତି । ଏ ସମସ୍ତଙ୍କୁ ମୂଳପୋଛ କରିବାକୁ ହେଲେ ପ୍ରଭୁ ଆପଣଙ୍କୁହିଁ ପୃଥିବୀ ଉପରେ ଜନ୍ମ ନେବାକୁ ହେବ ।"

ନାରଦଙ୍କ କଥା ଶୁଣି ଶ୍ରୀବିଷ୍ଣୁ କହିଲେ, "ମୁଁ ଅବଶ୍ୟ ପୃଥିବୀ ଉପରେ ଜନ୍ମ ଗ୍ରହଣ କରିବି । ତେବେ ବ୍ରହ୍ମଦେବ, ଆପଣ କୁହନ୍ତୁ କେଉଁଠାରେ ଓ କେବେ ମୁଁ ଜନ୍ମ ନେବି ।"

ବ୍ରହ୍ମା କହିଲେ, "ପ୍ରଭୁ, ଆପଣଙ୍କର ମନେଥିବ ଥରେ କଶ୍ୟପ ବରୁଣଙ୍କ ଯଜ୍ଞରୁ ଧେନୁମାନଙ୍କୁ ହରଣ କରି ନେଇ ଯାଇଥିଲେ । ପରେ ସେ ଫେରାଇବାକୁ ଗୃହାନ୍ତେ ତାଙ୍କର ଦୁଇ ପତ୍ନୀ ଅଦିତି ଓ ସୁରଭି ସେ କଥାରେ ସମ୍ମତ ହେଲେ ନାହିଁ । ବରୁଣ ମୋ ପାଖରେ ଏକଥା କହିବାରୁ ମୁଁ ରୁଷ୍ଟ ହୋଇ କଶ୍ୟପ ଓ ତାଙ୍କର ଦୁଇ ପତ୍ନୀଙ୍କୁ ମନୁଷ୍ୟ ଜନ୍ମ ନେବାକୁ ଶାପ ଦେଲି । କଶ୍ୟପ ବସୁଦେବ ରୂପେ, ଅଦିତି ଦେବକୀ ରୂପେ ଓ ସୁରଭି ରୋହିଣୀ ରୂପରେ ପୃଥିବୀ ଉପରେ ଜନ୍ମ ନେଇଛନ୍ତି । ଆପଣ ନିଜ କଳାକୁ ଦୁଇ ଅଂଶ କରି ସେହି ଦୁଇରାଣୀଙ୍କ ଗର୍ଭରେ ପ୍ରବିଷ୍ଟ ହୁଅନ୍ତୁ ।"

ବ୍ରହ୍ମାଙ୍କ କଥା ଭଗବାନ୍ ବିଷ୍ଣୁ ଆନନ୍ଦରେ ସ୍ୱୀକାର କଲେ । ତା'ପରେ ସଭା ଭଙ୍ଗ ହେଲା ଓ ଯିଏ ଯାହାର ରାଜ୍ୟକୁ ଫେରିଗଲେ । ଶ୍ରୀବିଷ୍ଣୁ ମଧ୍ୟ ଗରୁଡ଼ ଉପରେ ବସି କ୍ଷୀରସାଗର ଅଭିମୁଖେ ଯାତ୍ରା କଲେ ।





# ଘୋଡ଼ା ଭଡ଼ା

ଚାନ୍ଦପୁର ଗ୍ରାମରେ ମୋହନ ଓ ଶେଖର ନାମକ ଦୁଇଜଣ ଚାଷୀ ଥିଲେ । ମୋହନ ଜଣେ ସାଧାସିଧା ଓ ସରଳ ଲୋକ । କିନ୍ତୁ ଶେଖର ବହୁତ ବୁଦ୍ଧିମାନ । ମୋହନର ସାଧୁପଣିଆରୁ ବହୁ ସ୍ଥାନରେ ତାକୁ ଲୋକେ ଠକନ୍ତି ।

କନ୍ଦମୂଳ ଆମଦାନୀ ପରେ ମୋହନ ଚାହିଁଲା ସେଗୁଡ଼ିକ ନେଇ ସହରରେ ବିକିଲେ କିଛି ଅଧିକ ପଇସା ପାଇବ । ସେଥିପାଇଁ ସେ ତା'ର ବନ୍ଧୁ ଶଙ୍କର ପାଖକୁ ଯାଇ କହିଲା, "ଭାଇ ଶଙ୍କର ଦିନକ ପାଇଁ ତୋ ଘୋଡ଼ାଟିକୁ ଦେଲେ ମୁଁ ସହରରେ କନ୍ଦମୂଳ ଗୁଡ଼ିକ ବିକି କରି ସନ୍ଧ୍ୟା ସୁଦ୍ଧା ଫେରି ଆସନ୍ତି ।"

ଶଙ୍କର କହିଲା, 'ଭାଇ, ଏଇଟା କ'ଣ ଆଉ ବଡ଼ କଥା । ହେଲେ ମୋ ଘୋଡ଼ା ତ କାଲିଠାରୁ କୁଆଡ଼େ ପଳାଇଛି । ତେବେ ତୁ ରବି ଘରକୁ ଯାଇ ତା' ଘୋଡ଼ାଟି ମାଗିପାରୁ । ଅବଶ୍ୟ ସିଏ ଟିକିଏ କଂଜୁସ୍ ।"

ତା'ପରେ ମୋହନ ଯାଇ ରବି ଘରେ ପହଞ୍ଚି ସବୁକଥା କହିଲା । ରବି କିଛି ସମୟ ଚିନ୍ତା କରି କହିଲା, "ଘୋଡ଼ା ତ ଦେବି, କିନ୍ତୁ ସେଥିପାଇଁ ଭଡ଼ା ଦେବାକୁ ପଡ଼ିବ ।" ମୋହନ ବିଚରା କ'ଣ କରିବ । ବଡ଼ ବ୍ୟସ୍ତ ହୋଇ କହିଲା, "ମୋ ପାଖରେ ତ ଫଟା ପାହୁଲଟିଏ ନାହିଁ । ମୁଁ ଭାବିଥିଲି ତମେ ଶଙ୍କର ପରି ଦିନକ ପାଇଁ ଘୋଡ଼ାଟି ସେମିତି ଦେବ । ନିହାତି ଯଦି କିଛି ଚାହଁ ମୁଁ ସହରରୁ ଫେରିଲେ ଅଳ୍ପ କିଛି ଦେବି ।"

"ନା, ନା, ମୁଁ ସେମିତି କାହାକୁ ଘୋଡ଼ା ଦିଏ ନାହିଁ । ଯଦି ପ୍ରକୃତରେ ତମର ଘୋଡ଼ାଟି ଦରକାର ତେବେ ଭଡ଼ା ବାବଦ ଚଉଦଟି କଷାରୁ ଦେଇ ଦିଅ ।"

ପଚିଶ ବର୍ଷ ତଳର 'ଚନ୍ଦାମାମା'ରୁ ଗୃହୀତ




"ଏଁ, ପନ୍ଦରଟି କଖାରୁ ? ମୋ ଘରେ ତ ଏ ବର୍ଷର ଫସଲରୁ ପାଞ୍ଚଟି ମାତ୍ର କଖାରୁ ଅଛି ।" ମୋହନ କହିଲା ।

"ଆଚ୍ଛା ଏବେ ନିଜ ଘରୁ ପାଞ୍ଚଟି ଓ ଅନ୍ୟ କେଉଁଠୁ ଦଶଟି ମିଶାଇ ଆଣ । ତେବେ ଯାଇ ମୋ ଘୋଡ଼ାକୁ ପାଇବ ।" ରବି କହିଲା ।

ବିଚାରା ମୋହନ କିଛି କହି ନପାରି ରବିର ସର୍ତ୍ତ ମାନିନେଲା । ସେ ରବି ଘରେ ନେଇ ପାଞ୍ଚଟି କଖାରୁ ଦେଇ ଆସିଲା । ତା'ପରେ ଦଶଟି ଯୋଗାଡ଼ କରିବାକୁ ବାହାରି ଗଲା ।

ରାସ୍ତାରେ ତା'ର ଶଙ୍କର ସହିତ ଦେଖା ହେଲା । ଶଙ୍କର କହିଲା, "ଭାଇ ମୋହନ, ତୋ ଭାଗ୍ୟ ଭଲ, ମୋ ଘୋଡ଼ା ଫେରି ଆସିଛି । ତୁ ଏବେ ତାକୁ ନେଇପାରୁ ।"

"କିନ୍ତୁ ମୁଁ ତ ରବିକୁ କଥା ଦେଇ ଫେରିଛି । ଆଜ ତା' ଘୋଡ଼ାର ଭଡ଼ା ପନ୍ଦରଟି କଖାରୁ । ମୁଁ ପାଞ୍ଚଟି ଦେଇଛି । ଏବେ ଦଶଟି ଯୋଗାଡ଼ କରିବାକୁ ଯାଉଛି । ଏବେ କ'ଣ ହେବ ?" ମୋହନ କହିଲା ।

"ଠିକ୍ ସେହି ସମୟରେ ଶେଖର ସେଇ ବାଟରେ ଯାଉଥିଲା । ସେଠାକୁ ଆସି ସବୁ ଶୁଣିଲା । ତା'ପରେ ସେ କହିଲା, "ମୋହନ ତୁ ଏବେ ରବି ପାଖକୁ ଯାଇ କହ କି ତୋର ଘୋଡ଼ା ଦରକାର ନାହିଁ । ସେ ତୋର ପାଞ୍ଚଟି କଖାରୁ ଫେରସ୍ତ ଦେଇ ଦେଉ ।"

"ରବିକୁ ଦେଖିଲେ ତ ମୋତେ ଭୟ ଲାଗେ । ମୁଁ ଏତେ କଥା କହିବି କିପରି ?" ମୋହନ କହିଲା ।

"ଚାଲ, ମୁଁ ତୋ ସହିତ ଯିବି ଓ ତୋ କଖାରୁତକ ତା'ଠାରୁ ଫେରାଇ ଆଣିବି ।" କହିଲା ଶେଖର । ଏବେ ମଜା ଦେଖିବାକୁ ଶଙ୍କର ମଧ୍ୟ ସଙ୍ଗରେ ଗଲା । ତିନିଜଣ ବନ୍ଧୁ ଯାଇ ପହଞ୍ଚିଲେ ରବି ଘରେ ।

ତିନିଜଣଙ୍କୁ ଦେଖି ରବି ପଚାରିଲା, "କଥା କ'ଣ ?" ତୁମ ଘୋଡ଼ା ଦେଖିବାକୁ ଆସିଛୁ । ତୁମ ଘୋଡ଼ା କାହିଁ ? ଶେଖର କହିଲା ।

"ତୁମ ସାମନାରେ ଚରି ଠିଆ ହୋଇଛି । କିନ୍ତୁ ବାକି ଦଶଟି କଖାରୁ ନ ଦେଲେ ମୁଁ ଘୋଡ଼ା ଦେଉନାହିଁ ।" ରବି କହିଲା ।




"ଠିକ୍ ଅଛି, ଆମେ ତ ଦେବାକୁ ମନା କରୁନାହୁଁ । ତେବେ ଦେଖିବାକୁ ହେବ ଘୋଡ଼ା ଆମ କାମ ଚଳାଇ ପାରିବ କି ନାହିଁ ।" ଏତିକି କହି ଶେଖର ଯାଇ ଘୋଡ଼ାର ପିଠି ମାପିବାକୁ ଲାଗିଲା । ପିଠି ମାପୁ ମାପୁ ଶେଖର କହିଲା, "ମୋହନ, ତୋ ପାଇଁ ଦୁଇବୃଖଣ୍ଡ ସ୍ଥାନ ଦରକାର, ଆଉ ତୋ ପଛରେ ମୁଁ ବସିବା ପାଇଁ ଦେଡ଼ବୃଖଣ୍ଡ ସ୍ଥାନ ଦରକାର । ପୁଣି ମୋ ପଛରେ ମୋ ସ୍ତ୍ରୀ ବସିବ । ତା' ପାଇଁ ଅନ୍ତତଃ ଦୁଇବୃଖଣ୍ଡ ଲୋଡ଼ା । କିନ୍ତୁ ତୋ ସ୍ତ୍ରୀ ତ ଟିକିଏ ମୋଟା ନା ? ତା' ପାଇଁ ଦୁଇବୃଖଣ୍ଡ ଚାରି ଆଙ୍ଗୁଳ ସ୍ଥାନ ରଖିବା । ତାକୁ ଆଗରେ ବସାଇଲେ ତୁଆମାନେ କେଉଁଠି ବସିବେ ? ତୋ ଝିଅଟି ତ ନିହାତ ସାନ ତାକୁ ଘୋଡ଼ାର ବେକ ଉପରେ ବସାଇ ଦେବା । ସାନପୁଅ ପାଇଁ ଜାଗା ଦରକାର ନାହିଁ । ସେ ତୋ ସ୍ତ୍ରୀ କୋଳରେ ବସିଯିବ ।"

ଏ ସବୁକଥା ଶେଖରଠାରୁ ଶୁଣି ରବି ରାଗରେ ଥରିଲାଣି । ସେ ଚିତ୍କାର କରି କହିଲା, "ବାସ୍, ସେତିକି ଥାଉ, ତମର ଆଉ ବୁଦ୍ଧିଭ୍ରଂଶ ହୋଇନାହିଁ ତ ? କ'ଣ ଗୋଟିଏ ଘୋଡ଼ା ପିଠିରେ ଏତେ ଲୋକ ବସି ଯିବେ ?"

"ଆରେ ଭାଇ, ସେକଥା ତ ଘୋଡ଼ା ବୁଝିବ । ଆମ ସମସ୍ୟା ହେଲା ଏତେଲୋକ ଘୋଡ଼ା ଉପରେ ବସି ଯାଇପାରିବେ ନା ନାହିଁ । ଆମେସବୁ ତୀର୍ଥ ବୁଲି ଯିବୁ ତ ସେଥିପାଇଁ ।" ଶେଖର ପଚାରିଲା ।

"ତୀର୍ଥ ଯାଅ କି ନର୍କକୁ ଯାଅ, କିନ୍ତୁ ମୋ ଘୋଡ଼ା ଉପରେ ଦୁଇଟା ବଂଶ ପୂରା ବସି ଯିବାକୁ କିଏ କହିଲା । ଏ ଅବସ୍ଥାରେ ମୁଁ ଘୋଡ଼ା ଆଦୌ ଦେଉ ନାହିଁ । କେବଳ ସହରକୁ ଯିବା ଆସିବା ପାଇଁ ମୁଁ ଘୋଡ଼ା ଦେବାକୁ ରାଜି ହୋଇଥିଲି ।" ରବି କହିଲା ।

"ସହରକୁ ଯାଇ କ'ଣ ତୀର୍ଥ କରି ହେବ ମପାମପି କରି ଦେଖିଲି ଘୋଡ଼ା ପିଠି ଉପରେ ଜାଗା ଅଛି । ଟିକିଏ ଅସୁବିଧା ହେଲେ ବି ଚଳିଯିବ ।" ଶେଖର କହିଲା ।

"ଘୋଡ଼ା ନେବା ପୂର୍ବରୁ ତମେ କହିଲ ଭଲ କଲ । ନହେଲେ ତ ଘୋଡ଼ାଟି ମରି ଯାଇଥା'ନ୍ତା । ମୁଁ ତୁମକୁ ଘୋଡ଼ା ଦେଉନାହିଁ । ବୁଝିଲ ?" ରବ କହିଲା ।

"ତମେ ତ ଘୋଡ଼ା ଦେବାକୁ କଥା ଦେଇଛ । ଆମେ ସେହି ଅନୁସାରେ ସବୁ ପ୍ରସ୍ତୁତ କରିଛୁ । ଏବେ ଆମର ଜିନିଷ ସବୁ ନଷ୍ଟ ହେବ । କଥା ଦେଇ ପୁଣି ଠକାଉଛ ? ଏବେ ତାହେଲେ ଥାନାକୁ ଚାଲ ।" ପୁଣି ମୋହନକୁ ଅନାଇ କହିଲା, "ଆରେ ମୁଁ ତ ତୋ ବୁଢ଼ୀମା କଥା ଭୁଲି ଯାଇଥିଲି । ସିଏ ବି ଯିବ ପୁଣି ଜିନିଷ ପତ୍ର କିଛି କପର ଲଟକାଇ ନେବା ସେସବୁ ଭାବି ଠିକ୍ କର ।"

"କୌଣସି ସର୍ତ୍ତରେ ବି ମୁଁ ଘୋଡ଼ା ଦେଉନାହିଁ । ତମେ କ'ଣ ମୋ ଘୋଡ଼ାକୁ ମାରି ଦେବାକୁ ଚାହଁ ?" ରାଗିକରି କହିଲା ରବ ।

"କହିଦେଲେ ହେଲା ? ଠକେଇ ଅଭି-ଯୋଗରେ ତୁମକୁ ଏବେ ଥାନାକୁ ଯିବାକୁ ହେବ । କଥା ଦେଇଛ ପୁଣି ଅଗ୍ରୀମ ପାଞ୍ଚଟି କଖାରୁ ନେଇ ଏବେ ମନା କରୁଛ ?" ଶେଖର କହିଲା । "ତୁମ ପାଞ୍ଚଟି କଖାରୁ ଏବେ ନିଅ । ଯାଅ ଏଠୁ ।" ରବ କହିଲା ।

"ତମେ ତ ପନ୍ଦର କଖାରୁରେ ରାଜି ହୋଇଥିଲ । ଦଣ୍ଡ ସ୍ୱରୂପ ଆଉ ଦଶଟି ନ ଦେଲେ ଥାନାକୁ ଚାଲ ।" ଶେଖର କହିଲା ।

"କିନ୍ତୁ ମୋହନ ତ ପାଞ୍ଚଟି କଖାରୁ ଦେଇଥିଲା ।" ରବ ରାଗିକରି କହିଲା ।

"ତେବେ ଦଣ୍ଡସ୍ୱରୂପ ତମକୁ କିଛି ଦେବାକୁ ହେବ ।" ଶେଖର କହିଲା ।

ରବ ରାଗିଯାଇ ଆଉ କିଛି ଅଧିକା କଖାରୁ ଦେଇ କହିଲା, "ବାବା ଏଥର ଯାଅ ଆଉ ମୋତେ ପାଗଳ କରିଦିଅ ନାହିଁ ।"

ଶେଖର ଓ ଶଙ୍କର ହସି ହସି ତା' କଖାରୁତକ ତାକୁ ପୁଣି ଫେରାଇ ଦେଇ ମୋହନର ପାଞ୍ଚଟି କଖାରୁ ନେଇ ଆସିଲେ । ତିନି ବନ୍ଧୁଯାକ ଆନନ୍ଦରେ ଘରକୁ ଫେରିଲେ ।





# ଜାମାତା ନିର୍ବାଚନ

[ ୯ ]

ରାଜଦୀପ ଓ ପ୍ରିୟମ୍ବଦା ସୁଡ଼ଙ୍ଗ ଭିତରେ ପଶି ଭିତରୁ କବାଟ ଓଦାଇଦେଲେ । କିଛି ସମୟ ଧରି ଗ୍ରାମବାସୀମାନେ ବାହାରେ ଖୋଜାଖୋଜି କରି ସେମାନଙ୍କୁ ନ ପାଇବାରୁ ଭାବିଲେ କି ସେମାନେ ପ୍ରକୃତରେ ମହାବିଷ୍ଣୁ ଓ ଲକ୍ଷ୍ମୀ ।

ସେମାନେ ଅନ୍ତର୍ଦ୍ଧାନ ହୋଇଯିବା ପରେ ଜୟ ଓ ବିଜୟ ଖୁବ୍ ଆଶ୍ଚର୍ଯ୍ୟ ହେଲେ । ଏଣେ ଗ୍ରାମବାସୀମାନେ ସେମାନଙ୍କ ଉପରେ ଆକ୍ରମଣ କରି କହିଲେ, "ତୁମେ ଦୁଇ ରାକ୍ଷସ ଜନ୍ମ ନେଇଛ । ଏଇ ଗାଁରୁ ବାହାରି ଯାଅ ନହେଲେ ଆମେ ତୁମକୁ ପ୍ରାଣରେ ମାରିଦେବୁ । ଯଦି ଏଠାରେ ରହିବାକୁ ଚାହଁ ତେବେ ରାକ୍ଷସ ପ୍ରବୃତ୍ତି ଛାଡ଼ି ଭଦ୍ରଲୋକ ପରି ବାସ କର ।"

ଏଥର ସୁଡ଼ଙ୍ଗ ଭିତରେ ଯିବାବେଳେ ପ୍ରିୟମ୍ବଦା ଖୁବ୍ ଖୁସିଥା'ନ୍ତି । କାରଣ ସାଙ୍ଗରେ ପ୍ରିୟ ରାଜଦୀପ, ପୁଣି ଅନେକ ଖାଦ୍ୟ ସାମଗ୍ରୀ ।

ହଠାତ୍ ରାଜଦୀପ ପଚାରିଲେ, "ରାଜମହଲରେ ପ୍ରବେଶ କରିବା ପରେ କ'ଣ କରିବାକୁ ହେବ ?"

"ଶୁଣ, ରାଜ୍ୟରେ ସମସ୍ତେ ଜାଣନ୍ତି ଯେ ମୋତେ ଜଣେ ତାନ୍ତ୍ରିକ ନେଇ ଯାଇଛି । ମୁଁ ମୋ ପିତାଙ୍କୁ କହିବି କି ତମେହିଁ ମୋତେ ତାନ୍ତ୍ରିକ ହାତରୁ ରକ୍ଷା କରିଛ । ତା'ପରେ ସେମାନେ ଖୁସି ହୋଇ ମୋତେ ତୁମ ସହିତ ବିବାହ ଦେବେ ।" ପ୍ରିୟମ୍ବଦା କହିଲେ ।

"କିନ୍ତୁ ତମେ ତ ଉଦ୍ୟାନରକ୍ଷୀ ଜୟକୁ ମଧ୍ୟ ସେଇକଥା କହିଥିଲ ଓ ତାକୁ ବିବାହ



କରିବାକୁ କଥା ଦେଇଥିଲ ।" ରାଜଦୀପ କହିଲେ ।

"ତୁମକୁ ଦେଖିବା ପୂର୍ବରୁ ତାହାହିଁ ଥିଲା ମୋର ବିଚାର । ଜୟ ମୋର ପ୍ରାଣ ରକ୍ଷା କରିଥିବାରୁ ମୁଁ ହୁଏତ ତାକୁ ବିବାହ କରିବାକୁ କହିଥିଲି କୃତଜ୍ଞତା ସ୍ୱରୂପ । କିନ୍ତୁ ମୁଁ ତ ତାକୁ କେବେ ଭଲପାଇ ଏକଥା କହିନାହିଁ । ମୋର ସମସ୍ତ ଭଲ ପାଇବା ତୁମ ପାଇଁ । ତା' ପାଇଁ ଥିଲା କୃତଜ୍ଞତା ।" ପ୍ରିୟମ୍ବଦା କହିଲେ ।

ରାଜଦୀପ କିଛି ସମୟ ଭାବିଚିନ୍ତି କହିଲେ, "ଯାହାହେଲେ ମଧ୍ୟ ତମେ ତାକୁ କଥା ଦେଇଛ, ନିଜର ସତ୍ୟରକ୍ଷା କର ।"

ରାଜଦୀପଙ୍କର ଏଭଳି ନିଷ୍ଠୁରବାକ୍ୟ ଶୁଣି ପ୍ରିୟମ୍ବଦା ପଚାରିଲେ, "କ'ଣ ବିବାହ ପାଇଁ ମୁଁ ତୁମର ପସନ୍ଦ ନୁହେଁ ?"

"ପ୍ରିୟମ୍ବଦା, ତୁମେ ଯେବେ କହିଲ ତୁମ ଜାତକ ଅନୁସାରେ ତମେ ଜଣେ ସାଧାରଣ ଲୋକକୁ ବିବାହ କରିବ, ମୁଁ ସେହିଦିନଠାରୁ ସାଧାରଣ ହେବାକୁ ଚେଷ୍ଟା କଲି । ମୋ ଗୁରୁ ମୋତେ କହିଥିଲେ—"ତୁ ଅପକାର କରୁଥିବା ଲୋକର ମଧ୍ୟ ଉପକାର କରିବୁ । କୌଣସି ସ୍ୱାର୍ଥର ବଶୀଭୂତ ହେବୁ ନାହିଁ ।"— କିନ୍ତୁ ତୁମକୁ ଦେଖିବା ପରେ ମୁଁ କାମନାର ବଶୀଭୂତ ହେଲି । ଯାହା ବି ହେଉ ମୋ ଯୋଗୁ ଜୟ ପ୍ରତି ଅନ୍ୟାୟ କରାଯିବା ଉଚିତ୍ ନୁହେଁ ।" ରାଜଦୀପ କହିଲେ ।

ପ୍ରିୟମ୍ବଦା କିଛି ଉତ୍ତର ଦେଇ ପାରିଲେ ନାହିଁ । ସେ ନିଷ୍ପତ୍ତି କଲେ ଯେ ଜୟକୁ ତାଙ୍କ ସବୁ ବୁଝାଇ ଦେବେ ଓ ତା'ର ସ୍ୱୀକୃତି ନେଇ ସେ ରାଜଦୀପକୁ ବିବାହ କରିବେ । ଏହିପରି ନାନାକଥା ଭାବୁ ଭାବୁ ସେମାନେ ସୁଡ଼ଙ୍ଗର ଶେଷ ପ୍ରାନ୍ତରେ ପହଞ୍ଚିଲେ । ପ୍ରିୟମ୍ବଦା ଗୁପ୍ତଦ୍ୱାର ଭିତର ଦେଇ ଯାଇ ନିଜ କକ୍ଷରେ ପହଞ୍ଚିଲେ । ସେ ରାଜଦୀପଙ୍କୁ ଅନୁରୋଧ କଲେ କି କିଛି ସମୟ ସେ ସେହିଠାରେହିଁ ଥା'ନ୍ତୁ ।

ଶୟନକକ୍ଷରେ ପ୍ରବେଶ କରି ପ୍ରିୟମ୍ବଦା ଘଣ୍ଟି ବଜାଇଲେ । ଅନେକ ପରିଚାରିକା ଦୌଡ଼ି ଆସିଲେ । ଅଳ୍ପ ସମୟ ମଧ୍ୟରେ



ପ୍ରିୟମ୍ବଦା କୁଶଳରେ ଫେରିଥିବା ଖବର ରାଜମହଲ ଭିତରେ ପ୍ରଚାରିତ ହୋଇଗଲା ।

ରାଜା ରାଣୀ ଦୌଡ଼ି ଆସି ଝିଅକୁ ସ୍ନେହରେ ଆଲିଙ୍ଗନ କରି ସବୁକଥା ପଚାରି ପକାଇଲେ । ପ୍ରିୟମ୍ବଦା କେବଳ ଅଳ୍ପ ହସି କହିଲେ, "ମା', ସେସବୁ ଗପିଲେ ଦୀର୍ଘ ସମୟ ନେବ । ପରେ କହିବି । ଏବେ ଅନ୍ତଃପୁରର ସମସ୍ତ ରକ୍ଷୀଙ୍କୁ ମୋ ପାଖକୁ ଟିକିଏ ଡାକିଦିଅ ।"

ରାଜାଙ୍କ ଆଜ୍ଞାରେ ସବୁ ପ୍ରହରୀ ଆସି ହାଜର ହେଲେ । କିନ୍ତୁ ସେମାନଙ୍କ ମଧ୍ୟରେ ଜୟ ନଥିଲା । ପ୍ରିୟମ୍ବଦା ଆଶ୍ଚର୍ଯ୍ୟ ହୋଇ ପିତାଙ୍କୁ ପଚାରିଲେ, "ବାବା, ଏମାନଙ୍କ ମଧ୍ୟରେ ଜୟ ନାମକ ଏକ ପ୍ରହରୀ ଥିଲା, ସେ କାହିଁ ?"

ଜଣେ ପ୍ରହରୀ କହିଲା, "ରାଜକୁମାରୀ, ଜୟର ବିବାହ ହେବା କଥା । ତା'ର ଆଜି ନିର୍ବନ୍ଧ । ସେଥିପାଇଁ ଛୁଟି ନେଇ ଘରକୁ ଯାଇଛି । କାଲି ସେ କାମରେ ଯୋଗଦେବ ।"

ଏକଥା ଶୁଣିବା ମାତ୍ରେ ପ୍ରିୟମ୍ବଦାଙ୍କର ସମସ୍ୟାର ଅର୍ଦ୍ଧେକ ସମାଧାନ ହୋଇଗଲା । ତା'ପରେ ସେ ସମସ୍ତଙ୍କୁ ବିଦାକରି କହିଲେ, "ମୋତେ ବହୁତ ନିଦ ମାଡୁଛି ମୁଁ ଖୁବ୍ କ୍ଲାନ୍ତ । ଟିକିଏ ବିଶ୍ରାମ କରିବି ।" ପ୍ରିୟମ୍ବଦାଙ୍କୁ ନିଜ କକ୍ଷରେ ବିଶ୍ରାମ କରିବାକୁ ଛାଡ଼ିଦେଇ, ରାଜା ରାଣୀ ଓ ଅନ୍ୟମାନେ ସେଠାରୁ ଚାଲିଗଲେ । ସମସ୍ତେ ଯିବା ପରେ ପ୍ରିୟମ୍ବଦା ଦ୍ୱାର ଖୋଲି ରାଜଦୀପଙ୍କୁ ଡାକି ସବୁ କଥା କହିଲେ ।

ରାଜଦୀପ କହିଲେ, "ପ୍ରିୟମ୍ବଦା, ଏବେ ମଧ୍ୟ କଥା ସ୍ପଷ୍ଟ ହୋଇନାହିଁ । ଆମ ବିବାହ ପାଇଁ ଜୟର ସହର୍ଷ ସ୍ୱୀକୃତି ମିଳିବା ଦରକାର ।" ତା'ପରେ ସେ କିଛି ଖାଇବା ପରେ ପୁଣି ସୁଡ଼ଙ୍ଗ ଭିତରକୁ ଚାଲିଗଲେ ।

ପରଦିନ ଜୟ କାମରେ ଯୋଗ ଦେଲା । ପ୍ରିୟମ୍ବଦା ମଧ୍ୟ ଉଦ୍ୟାନକୁ ଯାଇ ତାହା ସହିତ ଦେଖା କଲେ ଓ କହିଲେ, "ଜୟ, ସବୁ କୁଶଳ ତ ? ମୁଁ ଶୁଣିଲି ତୁମର ବିବାହ ସ୍ଥିର ହୋଇ ଯାଇଛି ।"

"ଆଜ୍ଞା, ହଁ । ସେଦିନ ମୁଁ କିଛି ବିଚାର ନ କରି ଆପଣଙ୍କ କଥାରେ ରାଜି ହୋଇ ଯାଇଥିଲି । ସେଥିପାଇଁ ମୋତେ କ୍ଷମା କରନ୍ତୁ ।



ସବୁଦିଗରୁ ଚିନ୍ତାକରି ଦେଖିଲି ମୁଁ ଆପଣଙ୍କର ଯୋଗ୍ୟ ନୁହେଁ, ପୁଣି ଏପରି ଏକ କଥା ଶୁଣିବା ମାତ୍ରେ ମୋର ମୁଣ୍ଡକାଟ ଛଡ଼ା ଆଉ କିଛି ଦଣ୍ଡ ରାଜା ଦିଅନ୍ତେ ନାହିଁ। ତେଣୁ ମୁଁ ମୋର ସମାସ୍କନ୍ଦ ଜଣେ ପରିବାରର ଝିଅକୁ ବାଛିଲି।" ଜୟ କହିଲା। ତା'ପରେ ପ୍ରିୟମ୍ବଦା ସୁଡ଼ଙ୍ଗ ଭିତରୁ ରାଜଦୀପକୁ ଡାକି ସବୁ କଥା କହିବାରୁ ରାଜଦୀପ ଅବଶେଷରେ ବିବାହ ପାଇଁ ସ୍ୱୀକୃତ ହେଲେ। ତା'ପରେ ପ୍ରିୟମ୍ବଦା ତାଙ୍କୁ ନିଜର ମାତାପିତାଙ୍କ ପାଖକୁ ନେଇଯାଇ କହିଲେ, "ମୁଁ ଥରେ କୌତୁହଳବଶତଃ ସୁଡ଼ଙ୍ଗ ଭିତରେ ଯାଉ ଯାଉ ଅନେକ ଦୂର ଚାଲିଗଲି ଓ ଶେଷରେ ଅନ୍ଧକାର ଭିତରେ କୁଆଡ଼େ ଯାଉଛି ବୁଝିପାରିଲି ନାହିଁ। ଶେଷ ଭାଗରେ ପହଞ୍ଚି ମୁଁ ମୂର୍ଚ୍ଛିତ ହୋଇ ପଡ଼ିଲି ଏବଂ ଏଇ ଯୁବକ ମୋର ଜୀବନ ରକ୍ଷା କଲେ।" ତା'ପରେ ପ୍ରିୟମ୍ବଦା ଅଳ୍ପ ବହୁତ ରାଜଦୀପଙ୍କ ବିଷୟରେ ଓ ଗ୍ରାମରେ ରହିବାର ଅନୁଭୂତ ବିଷୟରେ କହିଲେ।

ରାଜଦୀପଙ୍କର ପ୍ରଭାବପୂର୍ଣ୍ଣ ବ୍ୟକ୍ତିତ୍ୱ ଦେଖି ରାଜା, ରାଣୀ ବହୁତ ଖୁସି ହେଲେ। ଆହୁରି ଖୁସି ହେଲେ ରାଜଦୀପ ଯେ ପ୍ରିୟମ୍ବଦାଙ୍କ ପାଇଁ ନିଜର ଅସାଧାରଣ ଶକ୍ତି ତ୍ୟାଗ କରିଛନ୍ତି। ରାଜା କହିଲେ, "ବତ୍ସ, ତମେ ମୋ ଝିଅ ପାଇଁ ନିଜର ସମସ୍ତ ଅସାଧାରଣ ଶକ୍ତିକୁ ପରିତ୍ୟାଗ କରିଛ ତାହା ମୋର ସୌଭାଗ୍ୟ। ପ୍ରିୟମ୍ବଦା ମୋର ଏକମାତ୍ର କନ୍ୟା। ତେଣୁ ତା'ର ସ୍ୱାମୀ ରୂପେ ଭବିଷ୍ୟତରେ ଏ ରାଜ୍ୟର ଶାସନ ଦାୟିତ୍ୱ ତୁମର। ସେଥିପାଇଁ ଏକ ଯୋଗ୍ୟ ପାତ୍ର ପାଇ ଆମେ ଖୁବ୍ ଖୁସି।"

ରାଜଦୀପ ଅଳ୍ପ ହସି କହିଲେ, "ମହାରାଜ, ଗୁରୁଙ୍କ ଆଦେଶରେ ଅପକାର କରିବା ବ୍ୟକ୍ତିର ମଧ୍ୟ ଉପକାର କରିଥିବା ହେତୁ ଫଳ ସ୍ୱରୂପ ମୋତେ ଆଜ ପ୍ରିୟମ୍ବଦା ଓ ରାଜ୍ୟ ସବୁ କିଛି ମିଳିଛି। ମୁଁ ଆପଣଙ୍କ ଇଚ୍ଛା ଅନୁସାରେହିଁ ନ୍ୟାୟ ଓ ଧର୍ମ ପୂର୍ବକ ରାଜ୍ୟ ଶାସନ କରିବି। ସେ ବିଷୟରେ ଆପଣ ନିଶ୍ଚିନ୍ତ ରହନ୍ତୁ।"

ରାଜଦୀପଙ୍କ କଥା ଶୁଣି ରାଜା ରାଣୀ ଅତ୍ୟନ୍ତ ଆନନ୍ଦିତ ହେଲେ। ରାଜା କହିଲେ, "ବତ୍ସ,

ରାଜାର ପ୍ରଥମ କର୍ତ୍ତବ୍ୟ ହେଲା ପ୍ରଜାଙ୍କ ହିତ ପାଇଁ କାର୍ଯ୍ୟ କରିବା । ତୁମେ ମନ, ବାକ୍ୟ ଓ କର୍ମରେ ପ୍ରଜାଙ୍କର ମଙ୍ଗଳ କରିବାକୁ ଚାହଁ, ତା'ଠାରୁ ବଡ଼ ଆଉ କ'ଣ ଥାଇପାରେ ?"

"ମହାରାଜ, ଆମେ ରହିଥିବା ଗ୍ରାମ ବିଷୟ ଶୁଣିଲେ । ସେପରି କୌଣସି ପ୍ରଜା ବା ସ୍ଥାନ ଏ ରାଜ୍ୟରେ ଥିଲେ ମୁଁ ନିଃସଙ୍କୋଚରେ ନିଜେ ଯାଇ ସମସ୍ତ କଷ୍ଟ ସହି ସେମାନଙ୍କର ମଙ୍ଗଳ ହେବା ପରି କାର୍ଯ୍ୟ କରିବି । ତାହା ମୋର ପ୍ରଥମ କର୍ତ୍ତବ୍ୟ ।" ରାଜଦୀପ କହିଲେ ।

"ପୁତ୍ର, ତମେ କେବଳ ମୋର ଜାମାତା ନୁହେଁ, ଆହୁରି ମଧ୍ୟ ଏ ଦେଶର ଭବିଷ୍ୟତ ଶାସନକର୍ତ୍ତା । ତୁମର ପ୍ରଜାମାନଙ୍କ ପ୍ରତି ଏହି ଭାବ କଥା ଶୁଣି ମୋ ମନ ଅତ୍ୟନ୍ତ ଆନନ୍ଦିତ ।" ରାଜା କହିଲେ ।

ପ୍ରିୟମ୍ବଦା ଜାଣିଥିଲେ କି ରାଜଦୀପ ତାଙ୍କ ପ୍ରେମରେ ମୁଗ୍ଧ ହୋଇ ବିବାହ କରୁଛନ୍ତି । କିନ୍ତୁ ତାଙ୍କର ଏହି ପ୍ରଜାବତ୍ସଳ ଗୁଣ ଯେ ତାଙ୍କର ମହନୀୟ ଚରିତ୍ରର ଅନ୍ୟ ଏକ ଦିଗ, ସେକଥା ଜାଣି ଆପେ ଆପେ ତାଙ୍କ ମଥା ନୋଇଁଗଲା । ସେ ତାଙ୍କୁ ପ୍ରଣାମ କରି କହିଲେ, "ମୋ ଜାତକରେ ଥିଲା ମୁଁ ଜଣେ ସାଧାରଣ ବ୍ୟକ୍ତିଙ୍କୁ ବିବାହ କରିବି । ହୋଇପାରେ ତୁମେ ରାଜବଂଶୀ ନୁହଁ । ତେଣୁ ସାଧାରଣ । କିନ୍ତୁ ଅନ୍ୟ ସବୁ ଭାବରେ ଦେଖିଲେ ତମେ ଅସାଧାରଣ । ତମେ ଉତ୍ତରପୁରୁଷଙ୍କ ପାଇଁ ଜଣେ ଉଜ୍ଜ୍ୱଳ ଦୃଷ୍ଟାନ୍ତ ହୋଇ ଇତିହାସରେ ରହିବା ପରି ଲୋକ । ତୁମକୁ ପାଇ ମୁଁ ସବୁଠାରୁ ଖୁସି ।"

ତା'ପରେ ରାଜଦୀପ ଓ ପ୍ରିୟମ୍ବଦାଙ୍କର ବିବାହ ଖୁବ୍ ଜାକଜମକରେ ସମ୍ପନ୍ନ ହେଲା । ଦୁହେଁ ସେମାନଙ୍କର ଜୀବନକାଳରେ ଅନେକ ଲୋକହିତକର କାର୍ଯ୍ୟ କରି ପ୍ରଜାଙ୍କର ପ୍ରିୟ ରାଜାରାଣୀ ଭାବରେ କାଳ ଯାପନ କଲେ ।

(ସମାପ୍ତ)





# ଅସଲ ଔଷଧ

ବ୍ରଜପୁର ରାଜ୍ୟର ଲୋକେ ସେମାନଙ୍କ ରାଜାଙ୍କ ଷଷ୍ଟିଦଶ ଜନ୍ମଦିନ ଅନେକ ଆଡ଼ମ୍ବରରେ ପାଳନ କଲେ । ସାରା ନଗରୀ ପୁଷ୍ପ ତୋରଣରେ ଶୋଭିତ ହେଲା ଓ ରାଜା ଜୟରାଜଙ୍କୁ ଏକ ଶୋଭାଯାତ୍ରାରେ ନଗରର ମଧ୍ୟସ୍ଥଳରେ ସଭା ସ୍ଥଳକୁ ନିଆ ହେଲା । ସେଠାରେ ପ୍ରଜାମାନେ ତାଙ୍କପାଇଁ ନୂଆ କରି ନିର୍ମାଣ କର[illegible]ବା ଗୋଟିଏ ରତ୍ନ ସିଂହାସନରେ ତାଙ୍କୁ ବସାଇ ଅଭ୍ୟର୍ଥନା ଦିଆଗଲା । କବିମାନେ ତାଙ୍କ ଉଦ୍ଦେଶ୍ୟରେ ରଚିତ କବିତାମାନ ପଢ଼ିଲେ; ଗାୟକମାନେ ତାଙ୍କ ପ୍ରଶସ୍ତି ସୁନ୍ଦର ସ୍ୱରରେ ବୋଲିଲେ । ସେମାନଙ୍କର ତଥା ବକ୍ତାମାନଙ୍କ ଭାଷଣର ମର୍ମ ହେଲା, ରାଜା ଆହୁରି ଅନେକ ଦିନ ବଞ୍ଚି ରହନ୍ତୁ !

ଉତ୍ସବ ଶେଷ ହେବା ପରେ ଦେଖାଗଲା ରାଜାଙ୍କ ମନ ଉଦାସ ହୋଇଯାଇଛି । କ୍ରମେ ଦେଖାଗଲା, ସେ ରାଜକାର୍ଯ୍ୟରେ ମନୋନିବେଶ କରୁ ନାହାନ୍ତି । ଅବଶ୍ୟ ସମସ୍ତେ ଯେ ତାଙ୍କର ଏଭଳି ଭାବାନ୍ତର ବୁଝିପାରୁଥିଲେ, ତାହା ନୁହେଁ । ଯେଉଁମାନେ ବୁଝୁଥିଲେ, ତାଙ୍କ ଭିତରେ ମୁଖ୍ୟ ହେଲେ ମନ୍ତ୍ରୀ ସୁମନଦେବ ।

ଦିନେ ସୁମନଦେବ ରାଜାଙ୍କୁ ଗୋପନରେ ପଚାରିଲେ, "ପ୍ରଭୁ! ଆପଣ ବହୁତ ବେଳେ ବଡ଼ ଚିନ୍ତିତ ରହୁଥିବାର ଦେଖୁଛି । କଥା କ'ଣ ?"

"ମନ୍ତ୍ରୀବର! ମୋ ବୟସ ଆସି ଷାଠିଏ ହେଲାଣି । ମୁଁ ଆଉ କେତେଦିନ ବଞ୍ଚିବି ? ସେଥିପାଇଁ ତ ସମସ୍ତେ ମୋ ଦୀର୍ଘ ଜୀବନ କାମନା କରୁଛନ୍ତି । ଅସଲ କଥା ହେଲା, ସମସ୍ତେ ଜାଣନ୍ତି ମୁଁ ଆଉ ବେଶିକାଳ ବଞ୍ଚିବି ନାହିଁ । ମୁଁ ବହୁତ ବୁଢ଼ା ଦିଶିଲିଣି ନିଶ୍ଚୟ !" ରାଜା କହିଲେ ।

ଆଶାଲତା



ମନ୍ତ୍ରୀ ଦେଖିଲେ, ସେ ଖାଲି ଗୁଡ଼ାଏ ଉତ୍ସାହବାଣୀ ଶୁଣାଇଲେ କିଛି ଲାଭ ହେବ ନାହିଁ । ତେଣୁ ସେ କହିଲେ, "ମହାରାଜ! କୁମରଗଡ଼ ରାଜ୍ୟରେ ପୁଣ୍ୟାଗୃହୀ ନାମକ ଜଣେ ବୈଦ୍ୟ ଅଛନ୍ତି । ତାଙ୍କ ଔଷଧରେ ଲୋକେ ଯେ ଖାଲି ଦୀର୍ଘଜୀବୀ ହୋଇ ପାରନ୍ତି, ତାହା ନୁହେଁ, ସେମାନଙ୍କ ଭିତରେ ଜୀବନୀଶକ୍ତି ଓ ଉତ୍ସାହ ମଧ୍ୟ ବଢ଼େ ।"

"କିନ୍ତୁ କୁମରଗଡ଼ର ରାଜା ଆମର ଶତ୍ରୁ । ଚିକିତ୍ସାରେ ଅଛି ଜାଣିଲେ ସେ ଧରିନେବ ଯେ ମୁଁ ଅସୁସ୍ଥ । ସଙ୍ଗେ ସଙ୍ଗେ ସେ ଆମ ରାଜ୍ୟରେ ବିଭ୍ରାଟ ସୃଷ୍ଟି କରିବାକୁ ଚକ୍ରାନ୍ତ କରିବ । ଆମେ ଛଦ୍ମବେଶରେ ଯାଇ ସେ ବୈଦ୍ୟଙ୍କୁ ଭେଟିବା, ଚାଲ ।" ରାଜା କହିଲେ ।

ମନ୍ତ୍ରୀ ଏଥିରେ ଅସମ୍ମତ ହେବାର ପ୍ରଶ୍ନ ନଥିଲା । ପରଦିନହିଁ ରାଜା ଜୟରାଜ ଓ ମନ୍ତ୍ରୀ ସୁମନଦେବ କୁମରଗଡ଼ ଅଭିମୁଖେ ବାହାରିଗଲେ ।

ନିଜ ରାଜ୍ୟ ପାର ହୋଇଯିବା ପରେ, ଗୋଟିଏ ପ୍ରାନ୍ତର ଭିତରଦେଇ ଯାଉଁ ଯାଉଁ ସେମାନେ ଶୁଣିଲେ ମଧୁର ସଙ୍ଗୀତ । ଏଣେ ତେଣେ ଚାହିଁ ଦେଖିଲେ, ଗୋଟାଏ ଗଛ ଉପରେ ବସି କେହି ଗୀତ ବୋଲୁଛି ।

"ବାବୁ, କୁମରଗଡ଼କୁ ରାସ୍ତା ଦେଖାଇ ଦେଇପାରିବ ?" ସେମାନେ ଲୋକଟିକୁ ପଚାରିଲେ ।

ଲୋକଟି ସଙ୍ଗେ ସଙ୍ଗେ ତଳକୁ ଡେଇଁ ପଡ଼ିଲା ଓ ନିଜର ଘରସାମ୍ୟ ନ ହରାଇ ସିଧା ଠିଆ ହୋଇ ରାସ୍ତା ନିର୍ଦ୍ଦେଶ କଲା ।

ରାଜା ତା' ଆଡ଼େ ଆଶ୍ଚର୍ଯ୍ୟ ହୋଇ ଅନାଇ ପଚାରିଲେ, "ତମ ବୟସ କେତେ ବାବୁ ?"

"ବୟସ ? ମୁଁ ତ ସେକଥା ମନେ ରଖିନାହିଁ ! ଯେଉଁଥର କୁମରଗଡ଼ ଓ ବ୍ରଜପୁର ଭିତରେ ଯୁଦ୍ଧ ହୋଇଥିଲା, ସେଥର କୁମରଗଡ଼ ରାଜ୍ୟର ଅଠର ବର୍ଷରୁ ଊର୍ଦ୍ଧ୍ୱ ସବୁ ଯୁବକଙ୍କୁ ସୈନ୍ୟବାହିନୀରେ ଯୋଗ ଦେବାକୁ ପଡ଼ିଥିଲା । ମୋ ବୟସ ଠିକ୍ ଅଠର ହୋଇଥିଲା ବୋଲି ମୁଁ ବି ଯୋଗ ଦେଇଥିଲି । ତା'ପରେ ଆଉ ବୟସ କଥା ଭାବିନାହିଁ ।" ଲୋକଟି କହିଲା ।

"କିନ୍ତୁ ସେ ଯୁଦ୍ଧ ତ ମୁଁ ଜନ୍ମ ହେବାର କୋଡ଼ିଏ ବର୍ଷ ଆଗରୁ ହୋଇଥିଲା । ଅର୍ଥାତ୍ ତମକୁ ବୟସ ଆସି ପ୍ରାୟ ଶହେ ହେଲାଣି !" ରାଜା କହିଲେ ।

"ହୋଇପାରେ !" ଲୋକଟି କହିଲା ।

ରାଜା ବିଲ୍‌ବିଲ୍ କରି ଅନାଇ ରହି ପଚାରିଲେ, "ଆଚ୍ଛା ବାବୁ, ତମେ ମୃତ୍ୟୁ ବିଷୟରେ କେବେ ଚିନ୍ତା କରନାହିଁ ?"

"ପଥିକ ! ମୁଁ ମୋ ଜନ୍ମ ବିଷୟରେ କେବେ ଚିନ୍ତା କରି ନଥିଲି । ଅତଏବ ମୃତ୍ୟୁ ବିଷୟରେ କାହିଁକି ଚିନ୍ତା କରିବି ?" ଲୋକଟି ଉତ୍ତର ଦେଲା ।

ରାଜାଙ୍କ ମୁହଁରେ ହସ ଫୁଟିଲା । ସେ ନିଜ ଝୁଲି ଖୋଲି ସେଥିରୁ କିଛି ଟଙ୍କା ବାହାର କରି ଲୋକଟିକୁ ଯାଚିଲେ ।

ଲୋକଟି ତାହା ଗ୍ରହଣ ନକରି କହିଲା, "ପଥିକ ମହାଶୟ ! ମୋର ଏହା ଲୋଡ଼ା ନାହିଁ । ଦିନରେ ଦୁଇଥର ମୁଁ ସାଧାସିଧା ଖାଦ୍ୟ ଲୋଡ଼ଥାଏଁ । ଆଉ ମୋର ଲୋଡ଼ା କିଛି କାମଦାମ କରିବାର ସୁଯୋଗ ଓ କିଛି ନିଦ୍ରା । ସେସବୁ ଭଗବାନ ମୋତେ ଯୁଟାଇ ଦିଅନ୍ତି । ଆପଣ ଯାହା ଦେଉଛନ୍ତି, ତାହା ମୋତେ ନୂଆ ସମସ୍ୟାରେ ପକାଇ ପାରେ ।"

"ଠିକ୍ କଥା କହୁଛ ।" ଏହା କହି ରାଜା ଟଙ୍କା ନିଜ ଝୁଲିରେ ପୂରାଇ ଉଠି ପଡ଼ିଲେ ଓ ବ୍ରଜପୁର ଆଡ଼େ ଯିବାକୁ ଆରମ୍ଭ କଲେ ।

"ଛାମୁଁ ! ଆମେ ପରା କୁମରଗଡ଼ ଯିବୁଁ ? ସେ ଲୋକ ଦେଖାଇଥିବା ରାସ୍ତା ଏଆଡ଼େ ।" ମନ୍ତ୍ରୀ ରାଜାଙ୍କୁ ମନେ ପକାଇ ଦେଲେ ।

"ମନ୍ତ୍ରୀବର ! ସେ ଲୋକ ଯେଉଁ ଅସଲ ରାସ୍ତା ଦେଖାଇଲା, ତାହା କିନ୍ତୁ ଏଆଡ଼େ ।" ରାଜା ନିଜ ରାଜ୍ୟ ଆଡ଼େ ହାତ ଦେଖାଇ କହିଲେ । ତା'ପରେ ସେ ଟିକିଏ ହସି ପୁଣି କହିଲେ, "ମୋର ଯେଉଁ ରୋଗ, ତା'ର ଔଷଧ ମୋ ମନରେ, ବୈଦ୍ୟଠି ନୁହେଁ ।"





## ହୌଲର



ଦକ୍ଷିଣ ଆମେରିକାରେ ଏକ ପ୍ରକାର ବାନର ଜାତୀୟ ଜୀବ ଅଛନ୍ତି ସେମାନଙ୍କୁ ହୌଲର କୁହନ୍ତି । ସେମାନେ ଅନ୍ୟ ବାନରମାନଙ୍କଠାରୁ ଅଧିକ ଶବ୍ଦ ଦ୍ୱାରା ଚିତ୍କାର କରନ୍ତି । ତାଙ୍କ ଗଳାରେ ଏକପ୍ରକାର ହାଡ଼ ଥାଏ ତାହା ସେମାନଙ୍କୁ ଚିତ୍କାର କରିବାରେ ସାହାଯ୍ୟ କରେ ।



## ଜିରାଫ

ଜିରାଫ ଏପରି ଏକ ଜୀବ ଯେ ଯେତେବଡ଼ ବିପଦ ପଡ଼ିଲେ ମଧ୍ୟ ସେ ସନ୍ତରଣ କରିପାରେ ନାହିଁ ।

କୁମ୍ଭୀରମାନେ ପଥର ଅଲବତ୍ତ ଖା'ନ୍ତି । କିନ୍ତୁ ଏକ ଜାତିର କୁମ୍ଭୀର ଅଛନ୍ତି ସେମାନେ ପ୍ରାୟ ୪.୭୭ କିଲୋଗ୍ରାମ ପଥର ଗିଳି ଦିଅନ୍ତି । ସ୍ରୋତରେ ନିଜକୁ ସ୍ଥିର ରଖିବାରେ, ପାଣିତଳେ ବହୁସମୟ ପଡ଼ି ରହିବାରେ ଓ ହଜମ କରିବାରେ ସେଗୁଡ଼ିକ ସାହାଯ୍ୟ କରନ୍ତି ।



## ପଥରଖିଆ କୁମ୍ଭୀର

# ଜହ୍ନମାମୁଁ

ଆଲୋକ ଓ ଆନନ୍ଦର ମାସିକ ପତ୍ରିକା



* ଭାରତର ପ୍ରାଚୀନ କାହାଣୀମାଳା ସହିତ ନୂତନ କାହାଣୀମାଳାର ଅପୂର୍ବ ସମନ୍ୱୟ ।
* ସରଳ ଓ ସଂଯତ ଭାଷାର ପ୍ରକୃଷ୍ଟ ଉଦାହରଣ—ଜହ୍ନମାମୁଁ ।
* ହାସ୍ୟରସ ସହ ମାନବିକତା ଓ ନୀତିଶିକ୍ଷାରେ ସମୃଦ୍ଧ ପତ୍ରିକା—ଜହ୍ନମାମୁଁ ।
* ଜହ୍ନମାମୁଁ କେବଳ ଶିଶୁ ବା କିଶୋରମାନଙ୍କ ପତ୍ରିକା ନୁହେଁ, ପରିବାରର ସମସ୍ତେ ଏହା ଉପଭୋଗ କରନ୍ତି ।
* ସାଧାରଣଜ୍ଞାନର ଭଣ୍ଡାର—ଜହ୍ନମାମୁଁ ।
* ଇଂରାଜୀ ଓ ସଂସ୍କୃତ ସମେତ ତେରଗୋଟି ଭାଷାରେ ପ୍ରକାଶିତ ଏ ପତ୍ରିକା ଭାରତର ଏକତାର ପ୍ରତୀକ ।

'ଜହ୍ନମାମୁଁ' ପଢ଼ନ୍ତୁ ଓ ପଢ଼ାନ୍ତୁ ।

ବାର୍ଷିକ ଦେୟ : ଟ ୩୦-୦୦



'ଜହ୍ନମାମୁଁ'ର ଗ୍ରାହକ ହେବା ନିମନ୍ତେ ଆପଣଙ୍କ ପୂରା ଠିକଣା ସହ ମନିଅର୍ଡର ତଳ ଠିକଣାକୁ ପଠାନ୍ତୁ :

## ଡଲ୍‌ଟନ୍ ଏଜେନ୍‌ସିଜ୍

ଚନ୍ଦାମାମା ବିଲ୍‌ଡିଙ୍ଗ୍‌ସ୍,

ବଡପଲନୀ, ମାଡ୍ରାସ-୬୦୦୦୨୬

# ଫଟୋ-ପରିଚୟ-ପ୍ରତିଯୋଗିତା: ପୁରସ୍କାର ଟ.୫୦

ପୁରସ୍କୃତ ପରିଚୟୋକ୍ତି ଜାନୁଆରି ୧୯୮୮ ସଂଖ୍ୟାରେ ପ୍ରକାଶ ପାଇବ



S. B. Takalkar



S. G. Shenoy

★ ଉଭୟ ଚିତ୍ର ପାଇଁ ଉପଯୁକ୍ତ ପରିଚୟୋକ୍ତି ଦୁଇ ଗୃଦ୍ ଧାଡ଼ିରେ ଲେଖା ହୋଇଥିବ ଏବଂ ପରସ୍ପର ସମ୍ବନ୍ଧିତ ହୋଇଥିବ ★ ନଭେମ୍ବର ୧୦ ସୁଦ୍ଧା ପରିଚୟୋକ୍ତି ପହଞ୍ଚିବା ଦରକାର।
★ ସର୍ବାଧିକ ଉପଯୁକ୍ତ ବିବେଚିତ ପରିଚୟୋକ୍ତି ପାଇଁ ଟ. ୫୦-୦୦ ପୁରସ୍କାର ପଠାଯିବ।
★ ପରିଚୟୋକ୍ତି ସହିତ ପ୍ରେରକଙ୍କର ନାମ ଓ ଠିକଣା ପୋଷ୍ଟକାର୍ଡରେ ଲେଖା ହୋଇ ଚନ୍ଦାମାମା ଫଟୋ ପରିଚୟ ପ୍ରତିଯୋଗିତା, ମାଡ୍ରାସ-୬୦୦୦୨୬ ଠିକଣାରେ ଆସିବା ଆବଶ୍ୟକ।

---

## ସେପ୍ଟେମ୍ବର '୮୭ ପ୍ରତିଯୋଗିତାର ଫଳ

ପ୍ରଥମ ଚିତ୍ର : ଗଛ ଚଢ଼ିବାରେ ଦଉଡ଼ା ଖଣ୍ଡିକ ସାହାଯ୍ୟ ମୋର !
ଦ୍ୱିତୀୟ ଚିତ୍ର : ସାହାଯ୍ୟ ମରୁରେ ତୋ ବିନା କେ ଅଛି ସାଥୀ ଆମର !!
ପୁରସ୍କାର ବିଜୟିନୀ : କାଦମ୍ବିନୀ ମହାନ୍ତି, ଭୁବନେଶ୍ୱର।
ବିଜୟିନୀଙ୍କୁ ଅଭିନନ୍ଦନ; ସମସ୍ତ ପ୍ରତିଯୋଗୀଙ୍କୁ ଧନ୍ୟବାଦ।


## ଜହ୍ନମାମୁଁ

ବାର୍ଷିକ ଦେୟ : ଟ. ୩୦-୦୦
ମନିଅର୍ଡର ପଠାଇବା ଠିକଣା :
ଡଲ୍ଟନ୍ ଏଜେନ୍ସିଜ୍, ଚନ୍ଦାମାମା ବିଲ୍ଡିଙ୍ଗସ୍, ବଡ଼ପଲନୀ, ମାଡ୍ରାସ-୬୦୦୦୨୬
ବିଦେଶ ସକାଶେ ଦେୟ ବିବରଣୀ ପାଇଁ ନିମ୍ନ ଠିକଣାକୁ ଲେଖନ୍ତୁ :
ଚନ୍ଦାମାମା ପବ୍ଲିକେସନ୍ସ, ଚନ୍ଦାମାମା ବିଲ୍ଡିଙ୍ଗସ୍, ବଡ଼ପଲନୀ, ମାଡ୍ରାସ-୬୦୦୦୨୬

Printed by B.V. REDDI at Prasad Process Private Ltd., 188 N.S.K. Salai, Madras 600 026 (India) and Published by B. VISHWANATHA REDDI on behalf of CHANDAMAMA PUBLICATIONS, Chandamama Buildings, Vadapalani, Madras 600 026 (India). Controlling Editor: NAGI REDDI.

... କ୍ୟାରେଟ - ସ୍ୱର୍ଣ୍ଣାଚ୍ଛାଦିତ ଅଳଙ୍କାର ଜଗତରେ ବିଶ୍ୱସ୍ତ ଓ ବିଖ୍ୟାତ ନାମ
ସଚ୍ଚା ଜିନିଷ ଏବଂ ଅତୁଳନୀୟ ସୌନ୍ଦର୍ଯ୍ୟ ! ସବୁ ପ୍ରକାର ଉଚିତ୍ ମୂଲ୍ୟରେ ଉ...
ନାନା ବିଧ ଅଳଙ୍କାର !

ମଗାଇଲେ ବେଳେ ଅଙ୍କ କାରର ନମ୍ବର ଲେଖିବେ । ଭି. ପି. ଖର୍ଚ୍ଚ ଅଲଗା ।
ମାଗଣା ତାଲିକା ପାଇଁ ଲେଖନ୍ତୁ । (ଏଜେଣ୍ଟ ଆବଶ୍ୟକ)



Rs. 150 50



Rs. 75/50


No.95 Rs. 75/50


No. 78. Rs. 50 50



Rs. 40 50


No.98 Rs. 75/50


No. 81. Rs. 50/50


No.28
Rs. 225 50

No.32
Rs. 200 50

No.136

Rs. 50 50


No. 74 Rs. 75/50 STONE


No.18
Rs. 250 50


No.181 Rs. 65 50

No.140
Rs. 50/50

No.129
Rs. 50 50


No.21
Rs. 250 50



Rs.25 50




No.146

Rs. 100 50

No.147

Rs. 100 50

No.149

Rs. 100 50

No.150

Rs. 100 50

No.151

Rs. 100/50



Rs. 100 50


No.145
Rs. 80 50


No.165
Rs. 50/50



No.159
Rs. 65 50

No.167

Rs. 50/50


No.96 Rs. 75/50


No.99 Rs. 75/50


No.102 Rs. 75/50


No.191 Rs. 65/50


No.192 Rs. 65 50